


# ଉତ୍କଳ ସାହିତ୍ୟ ସମାଜ

## କାର୍ଯ୍ୟ ବିବରଣୀ

( ତା ୫।୧୦।୮୫ଠାରୁ ତା ୧୯।୬।୮୭ ପର୍ଯ୍ୟନ୍ତ )

(ତା ୨୦।୬।୮୭ରେ ଅନୁଷ୍ଠିତ ୮୩ତମ ବାର୍ଷିକ
ସାଧାରଣ ଅଧିବେଶନ ଲାଗି ଉଦ୍ଦିଷ୍ଟ)

॥ ଉପସ୍ଥାପନା ॥

ଶ୍ରୀମତୀ ମନୋରମା ମହାପାତ୍ର
ସାଧାରଣ ସମ୍ପାଦିକା

❋

ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ
ସଂଗଠନ ସମ୍ପାଦକ

ଶ୍ରୀରାମଚନ୍ଦ୍ର ଭବନ
କଟକ-୭୫୩୦୦୯

# ଉତ୍କଳ ସାହିତ୍ୟ ସମାଜର ବିବରଣୀ

ମାନନୀୟ ସଭାପତି ମହୋଦୟ,
ସାହିତ୍ୟ ସମାଜର ଅନ୍ୟାନ୍ୟ କର୍ମକର୍ତ୍ତା,
କାର୍ଯ୍ୟ ନିର୍ବାହିକା ସମିତିର ସଦସ୍ୟବର୍ଗ ଏବଂ
ଆଜୀବନ ଓ ସାଧାରଣ ସଭ୍ୟବୃନ୍ଦ !

ବିଂଶଶତାବ୍ଦୀର ପ୍ରାରମ୍ଭରେ ୧୯୦୩ ମସିହାରେ ପ୍ରତିଷ୍ଠିତ ଉତ୍କଳର ସର୍ବବୃହତ୍, ସର୍ବପ୍ରାଚୀନ ସାହିତ୍ୟ ସଂସ୍ଥା ଉତ୍କଳ ସାହିତ୍ୟ ସମାଜର ସାଧାରଣ ଅଧିବେଶନ ଉପଲକ୍ଷେ କଟକର ସାଂସ୍କୃତିକ ପ୍ରାଣକେନ୍ଦ୍ର, ସାରସ୍ୱତ ମିଳନପୀଠ ଶ୍ରୀରାମଚନ୍ଦ୍ର ଭବନଠାରେ ଆଜି ଆମେ ଏକତ୍ର ହୋଇଛେଁ । ଆଜିର ଏହି ଶୁଭ ମିଳନ ମହୋତ୍ସବରେ ଆମେ ସର୍ବପ୍ରଥମେ ଆପଣମାନଙ୍କୁ ସ୍ୱାଗତ ଅଭିନନ୍ଦନ ଜ୍ଞାପନ କରିବା ସଙ୍ଗେ ସଙ୍ଗେ ସାହିତ୍ୟ ସମାଜର ବିଭିନ୍ନ କାର୍ଯ୍ୟକ୍ରମ ପରିଚାଳନାରେ ଆପଣମାନଙ୍କ ଆନ୍ତରିକ ଆଗ୍ରହ ଓ ସକ୍ରିୟ ସହଯୋଗ ଯୋଗୁଁ ଗଭୀର କୃତଜ୍ଞତା ଜ୍ଞାପନ କରୁଛୁ ।

ଉତ୍କଳ ସାହିତ୍ୟ ସମାଜର ବିଗତ ବାର୍ଷିକ ଅଧିବେଶନ ୧୯୮୫ ଅକ୍ଟୋବର ୫ ଓ ୬ ତାରିଖ ଦୁଇ ଦିନ ଧରି ଅନୁଷ୍ଠିତ ହୋଇଥିଲା ।

ପ୍ରଥମ ଦିନ ସଂଧ୍ୟାରେ ରାଜସ୍ୱ ପର୍ଷଦ ସଦସ୍ୟ ଶ୍ରୀ ବିଷ୍ଣୁରାଜ ପଟେଲ ଉତ୍କଳ ସାହିତ୍ୟ ସମାଜଦ୍ୱାରା ଆୟୋଜିତ ପୁସ୍ତକ ପ୍ରକାଶକମାନଙ୍କର ଏକ ପୁସ୍ତକ ପ୍ରଦର୍ଶନୀକୁ ଉଦ୍‌ଘାଟନ କରିଥିଲେ ।

ଏହି ପରିପ୍ରେକ୍ଷୀରେ ଉତ୍କଳ ସାହିତ୍ୟ ସମାଜର ସାଧାରଣ ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର ପ୍ରାରମ୍ଭିକ ସୂଚନା ଦେଇ କହିଲେ ଯେ ଓଡ଼ିଆ ଭାଷାର ବିପର୍ଯ୍ୟୟ ଘଟିବା ସମୟରେ କେତେକ ସାହିତ୍ୟ ମହାରଥୀ ଓ ମହାପୁରୁଷଙ୍କ ଉଦ୍ୟମରେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ୧୯୦୩ ମସିହା ମଇ ମାସରେ ଉତ୍କଳ ସାହିତ୍ୟ ସମାଜ ଗଠିତ ହୋଇଥିଲା । ଏଥିରେ ଉତ୍କଳ ଗୌରବ ମଧୁସୂଦନ ଦାସ ପ୍ରେରଣାର ଉତ୍ସ ଥିଲେ । ପ୍ରଥମ ବର୍ଷ ସେତେବେଳେ ରାଧାନାଥ ରାୟ ଏଥିରେ ସଭାପତି ହୋଇଥିଲେ । ୧୯୨୭ ମସିହାରୁ ଶ୍ରୀରାମଚନ୍ଦ୍ର ଭବନ ହୋଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ତାର ସଂପ୍ରସାରଣ କରାଯାଇପାରି ନାହିଁ । ଏହାର ପାଠାଗାର ୧୯୪୪ରେ ସ୍ଥାପିତ ହୋଇଥିଲା । ଏହି ଅନୁଷ୍ଠାନର ଆଦ୍ୟ ଐତିହ୍ୟ ବର୍ଣ୍ଣନା କରି

ସେ ଏବକାର ସାଧକ, ବାଣୀପୁତ୍ର ଓ ସାହିତ୍ୟିକମାନଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜଣାଇ ଏହାର ଉନ୍ନତି ପାଇଁ ସମସ୍ତଙ୍କର ମିଳିତ ସହଯୋଗ କାମନା କରିଥିଲେ। ସମବେତ ଅତିଥିମାନଙ୍କ ପରିଚୟ ପ୍ରଦାନ କରି ଅନୁଷ୍ଠାନର ବିଭିନ୍ନ ସାହିତ୍ୟିକ କାର୍ଯ୍ୟକଳାପର ସେ ସୂଚନା ଦେଇଥିଲେ।

ଉପସଭାପତି ଶ୍ରୀ ଶୁକ୍ରଦେବ ସାହୁ ଅତିଥିମାନଙ୍କୁ ସ୍ୱାଗତ ଜଣାଇଥିଲେ।

ଏହି ଉତ୍ସବ ଉପଲକ୍ଷେ ସାହିତ୍ୟ ସମାଜ ପକ୍ଷରୁ ଆୟୋଜିତ 'ସଭ୍ୟତା ଓ ସାହିତ୍ୟ' ଶୀର୍ଷକ ଆଲୋଚନାଚକ୍ରରେ ଉତ୍କଳ ସାହିତ୍ୟ ସମାଜର ସଭାପତି ଶ୍ରୀ ଚିଦ୍ରାନନ୍ଦ କର ସଭାପତିତ୍ୱ କରିଥିଲେ। ମୁଖ୍ୟଅତିଥି ଶ୍ରୀ ବିଘ୍ନରାଜ ପଟେଲ କହିଥିଲେ ଯେ, "ଅଢ଼େଇ କୋଟି ଲୋକସଂଖ୍ୟା ବିଶିଷ୍ଟ ଓଡ଼ିଶାରେ ବର୍ଷକୁ ମାତ୍ର ୫୦୦ ବହି ପ୍ରକାଶିତ ହେବା ଅତି ଦୁଃଖର ବିଷୟ। ପାଠକମାନଙ୍କ ମନରେ ଆଗ୍ରହର ଅଭାବ, ପୁସ୍ତକର ଅଧିକ ମୂଲ୍ୟବୃଦ୍ଧି ତଥା ଲେଖକମାନଙ୍କୁ ପ୍ରୋତ୍ସାହନର ଅଭାବ ହିଁ ଏହାର ମୁଖ୍ୟ କାରଣ।" ୟୁରୋପୀୟ ସାହିତ୍ୟିକମାନଙ୍କ ସହିତ ଭାରତୀୟ ସାହିତ୍ୟିକମାନଙ୍କର ଏକ ତୁଳନାତ୍ମକ ଚିତ୍ର ପ୍ରଦାନ କରି ସେ କହିଲେ ଯେ ସମବେଦନା ନ ଥିଲେ ସାହିତ୍ୟ ସର୍ବଗ୍ରାହୀ ହୋଇପାରେ ନାହିଁ। ସଭ୍ୟତା ଓ ସାହିତ୍ୟ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ବୋଲି ସେ ମତ ଦେଇଥିଲେ।

ସମ୍ମାନିତ ଅତିଥି ପ୍ରଖ୍ୟାତ କବି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ କହିଲେ ଯେ ମନୁଷ୍ୟ ବ୍ୟବହାର କରୁଥିବା ହାତହତିଆରରୁ ସେ ସମୟର ସଭ୍ୟତା ସମ୍ପର୍କରେ ଧାରଣା କରି ହେବ। ବହିଃପ୍ରକୃତି ସହିତ ପରିଚିତ ହେଲା ପରେ ମନୁଷ୍ୟ ଅନ୍ତଃପ୍ରକୃତି ସହିତ ପରିଚିତ ହୋଇଥାଏ। ପ୍ରକୃତିକୁ ଜୟ କରିବାର ପ୍ରବୃତ୍ତି ଏବଂ ଉତ୍ପାଦନ କରିବାର ଇଚ୍ଛା ହିଁ ମନୁଷ୍ୟକୁ ସାମାଜିକ କରି ଗଢ଼ିତୋଳିଛି। ସେହିଭଳି ପୁଞ୍ଜିବାଦ ଫଳରେ ଦାସତ୍ୱର ବିଲୋପ ସାଧନ ହୋଇଥିଲା। ଏସବୁରୁ ଜଣାଯାଏ ଯେ ବାସ୍ତବତା ଓ ବସ୍ତୁବାଦରୁ ହିଁ ସଭ୍ୟତା ଜନ୍ମ ନେଇଥାଏ। ସମାଜ ସର୍ବଦା ପରିବର୍ତ୍ତନଶୀଳ ଏବଂ ଚେତନା ଓ ସାହିତ୍ୟ ବାସ୍ତବବାଦରୁ ହିଁ ଜନ୍ମ ନେଇଥାଏ।

ଅନ୍ୟତମ ଅତିଥି ଭାଷାତତ୍ତ୍ୱବିତ୍ ଡଃ କୁଞ୍ଜବିହାରୀ ତ୍ରିପାଠୀ କହିଲେ, ଯେ ନିଜ ଆଚରଣରେ ସଂସ୍କାରିତ ସେ ସଭ୍ୟ ଓ ତାର ଭାବ ସଭ୍ୟତା; କିନ୍ତୁ ଏହା ବ୍ୟାପକ ଅର୍ଥରେ ବ୍ୟବହୃତ। ସାହିତ୍ୟ ବହୁମୁଖୀ ଓ ଏହାର ଧର୍ମ ହେଉଛି ମଙ୍ଗଳ ସାଧନ କରିବା। ସାହିତ୍ୟ ଯଶ, ଅର୍ଥ, ଶୁଦ୍ଧତା, ମଙ୍ଗଳ ଓ ଆନନ୍ଦଦାୟିନୀ ବୋଲି ଉଦାହରଣ ସହ ସେ ବୁଝାଇଥିଲେ। ଏଣୁ ସଭ୍ୟତା ଓ ସାହିତ୍ୟ ପରସ୍ପର ସମ୍ବନ୍ଧିତ। ସାହିତ୍ୟ ଯୁଗେ ଯୁଗେ ସଭ୍ୟତାକୁ ଉନ୍ନତ ଓ ଶୁଦ୍ଧ କରିଛି, ମାତ୍ର ସଭ୍ୟତା ସବୁ ସାହିତ୍ୟରେ ପ୍ରତିବିମ୍ବିତ ହୁଏ ନାହିଁ। ବ୍ୟାସଦେବଙ୍କ ଭଳି ପ୍ରଭାବଶାଳୀ ଲେଖକ ଏଯାବତ୍ ଜନ୍ମ ହୋଇ ନାହାନ୍ତି। ନିଜ କଥା ଭୁଲି ଆମେ ପାଶ୍ଚାତ୍ୟ

ଦେଶର ମନ୍ଦଗୁଣ ଆହରଣ କରୁଛୁ । ସାହିତ୍ୟିକ ସମାଜରୁ,- ଭୟ ଦୂର କରନ୍ତୁ ବୋଲି ସେ କହିଥିଲେ ।

ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାଶ ମହାପାତ୍ର ସମ୍ମାନିତ ଅତିଥି ଭବେ ଯୋଗ- ଦାନ କରି କହିଲେ ଯେ ସାହିତ୍ୟ କଦାପି ସମୟ ସୀମା ମଧ୍ୟରେ ଆବଦ୍ଧ ନୁହେଁ । ସାହିତ୍ୟ ମଞ୍ଚରେ କୌଣସି ଭେଦଭବ ନାହିଁ । ସମଗ୍ର ମାନବସମାଜକୁ ଏକ ପରିବାର ରୂପେ ପରିକଳ୍ପନା କେବଳ ସାହିତ୍ୟ ମଞ୍ଚରେ ହିଁ ସମ୍ଭବ । ସାହିତ୍ୟ ସର୍ବକାଳର । ସାହିତ୍ୟିକ ମଞ୍ଚ ଏକମାତ୍ର ଶକ୍ତିଶାଳୀ ମଞ୍ଚ, ଯେଉଁ ମଞ୍ଚରୁ ଆମେ ସାହିତ୍ୟକୁ ଓ ସମାଜକୁ ଠିକ୍ ବାଟରେ ନେଇପାରିବୁ । ସଭ୍ୟତା ଓ ସାହିତ୍ୟ ପରସ୍ପର ଜଡ଼ିତ । ସାହିତ୍ୟ ସଭ୍ୟତାକୁ ନିୟନ୍ତ୍ରଣ କରିଥାଏ । ରୁଗ୍ଣ ସମାଜକୁ ସୁସ୍ଥ କରିବାର ଦାୟିତ୍ୱ ସଂସ୍କୃତିସମ୍ପନ୍ନ ସାହିତ୍ୟସ୍ରଷ୍ଟାଙ୍କର । ଓଡ଼ିଶାର ସାହିତ୍ୟିକମାନେ ସମାଜକୁ ଦିଗ୍‌ଦର୍ଶନ ଦେଇ ବାଟ ଦେଖାନ୍ତୁ । ବାଣୀପୀଠ ଉତ୍କଳ ସାହିତ୍ୟ ସମାଜ ଏ ଦିଗରେ କାର୍ଯ୍ୟ କରି ଆସିଛି ଓ କରିବ ମଧ୍ୟ । ଓଡ଼ିଆ ସାହିତ୍ୟ ଅତି ସମୃଦ୍ଧ । ମାତ୍ର ସାହିତ୍ୟିକମାନଙ୍କ ମଧ୍ୟରେ ସହନଶୀଳତା ଓ ସଂହତିର ଅଭବ ରହିଛି । ସେ ଉତ୍କଳ ସାହିତ୍ୟ ସମାଜର ପ୍ରାଚୀନ ପୁସ୍ତକ ସଂରକ୍ଷଣ ଦିଗରେ ଉଦ୍ୟମ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ଆଲୋଚନାଚକ୍ରରେ ମୁଖ୍ୟବକ୍ତା ରୂପେ ଯୋଗ ଦେଇ 'ଦୁର୍ମୁଖ'ର ସମ୍ପାଦକ ଶ୍ରୀ ଅଚ୍ୟୁତାନନ୍ଦ କର କହିଲେ ଯେ ରୁଗ୍ଣ ମନୋବୃତ୍ତି ରହିଲେ ସମାଜ ଓ ସାହିତ୍ୟ ଭୁଷୁଡ଼ି ପଡ଼ିବ । ଏଣୁ ରୁଗ୍ଣ ସମାଜରେ ସୁସ୍ଥ ସାହିତ୍ୟ ରଚନା ସମ୍ଭବ ନୁହେଁ । ସାହିତ୍ୟରେ ସତ୍ୟ-ଶିବ-ସୁନ୍ଦରର ପ୍ରକାଶ ଓ ସଂସ୍କୃତିର ବିକାଶ ଘଟିଥାଏ । ସାହିତ୍ୟିକ ନିକଟରେ ଗରିବ ଧନୀ ସମସ୍ତେ ହେଉଛନ୍ତି ବିଭବମୟ ଆନନ୍ଦର ଉପାଦାନ । ମୁକ୍ତସମାଜ ଗଠନ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ।

ସଭ୍ୟତାକୁ ସମୃଦ୍ଧ କରିବାରେ ସାହିତ୍ୟର ଭୂମିକା ସମ୍ପର୍କରେ ଆଲୋକ- ପାତ କରି ସଭପତି ଶ୍ରୀ ବିଚିତ୍ରାନନ୍ଦ କର କହିଲେ ଯେ ସାହିତ୍ୟ ଓ ସଭ୍ୟତା ପରସ୍ପର ପରିପୂରକ । ସାହିତ୍ୟର ଉନ୍ନତି ବିନା ସଭ୍ୟତାର ବିକାଶ ସମ୍ଭବ ନୁହେଁ । ଆଞ୍ଚଳିକତାର ଊର୍ଦ୍ଧ୍ୱରେ ରହି ସମଗ୍ର ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ଉତ୍କଳ ସାହିତ୍ୟ ସମାଜ ଚେଷ୍ଟିତ । ସେ ସେଥିପାଇଁ ସମସ୍ତଙ୍କ ସାହାଯ୍ୟ ସହଯୋଗ କାମନା କରିଥିଲେ ।

ପ୍ରାରମ୍ଭରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ପରଲୋକଗତ ସାହିତ୍ୟିକ, ସେବକ, ସାଧକମାନଙ୍କ ପୁଣ୍ୟସ୍ମୃତି ଉଦ୍ଦେଶ୍ୟରେ ୨ ମିନିଟ ନୀରବ ପ୍ରାର୍ଥନା କରାଯାଇ ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇଥିଲା । ପାରମ୍ପରିକ ରୀତିରେ ବେଦମନ୍ତ୍ର ପାଠ ଓ ହୁଳହୁଳି ଧ୍ୱନି ମଧ୍ୟରେ ୮୨ଟି ପ୍ରଦୀପ ଜାଳି ଅଧିବେଶନକୁ ଉଦ୍‌ଘାଟନ କରାଯାଇଥିଲା । ପଣ୍ଡିତ ପ୍ରବୋଧକୁମାର ମିଶ୍ର ବେଦ ପାଠ କରିଥିଲେ ।

ବହୁ ବିଶିଷ୍ଟ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କରୁ ଆସିଥିବା ବାର୍ତ୍ତା ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର ପାଠ କରିଥିଲେ । ଉପସଭପତି ଶ୍ରୀ ଶୁକଦେବ ସାହୁ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ସଂଗଠନ ସମ୍ପାଦକ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ ଧନ୍ୟବାଦ ଦେଇଥିଲେ । ଶେଷରେ କୁମାରୀ ଗୀତା ପଟ୍ଟନାୟକ ଏବଂ ଶ୍ରୀ ନରୋତ୍ତମ ସାହୁ ଜଗନ୍ନାଥ ଜଣାଣ ଓ ସମ୍ବଲପୁରୀ ସଙ୍ଗୀତ ପରିବେଷଣ କରିଥିଲେ ।

## ତା ୭ । ୧୦ । ୮୫

ଅଦ୍ୟ ସନ୍ଧ୍ୟାରେ ବାଣୀପୀଠ ଶ୍ୟାମଚନ୍ଦ୍ର ଭବନଠାରେ ଉତ୍କଳ ସାହିତ୍ୟ ସମାଜର ୮୨ତମ ବାର୍ଷିକ ଉତ୍ସବର ଉଦ୍‌ଯାପନ ଦିବସ ଉପଲକ୍ଷେ ଆୟୋଜିତ ଏକ ସାରସ୍ୱତ ମନୋଜ୍ଞ ସମାରୋହରେ ମୁଖ୍ୟଅତିଥି ରୂପେ ଯୋଗ ଦେଇ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ କହିଲେ, "ଓଡ଼ିଆ ସାହିତ୍ୟ ଅନ୍ୟ ପ୍ରଦେଶର ସାହିତ୍ୟ ତୁଳନାରେ କେବେ ନ୍ୟୂନ ନୁହେଁ । କେବଳ ଭାରତୀୟ ସାହିତ୍ୟ କାହିଁକି, ଓଡ଼ିଆ ସାହିତ୍ୟର ବହୁ କୃତି ଆନ୍ତର୍ଜାତିକ ସାହିତ୍ୟର ସମକକ୍ଷ । ସଂଗଠନର ସଭାପତି ଶ୍ରୀ ବିଚିତ୍ରାନନ୍ଦ କରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉତ୍ସବକୁ ବିଶିଷ୍ଟ ଐତିହାସିକ, ଗବେଷକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଦୀପ ପ୍ରଜ୍ୱଳନ କରି ଉଦ୍‌ଘାଟନ କରିଥିଲେ । ଔପନ୍ୟାସିକା ଅଧ୍ୟାପିକା ଡଃ ପ୍ରତିଭା ରାୟ ଏବଂ ସାଂସ୍କୃତିକ ବିଭାଗ ଶାସନ ସଚିବ ଶ୍ରୀ ସମରବଲ୍ଲଭ ମହାପାତ୍ର ଏଥିରେ ସମ୍ମାନିତ ଅତିଥି ଭାବେ ଯୋଗ ଦେଇଥିଲେ ।

ଅନୁଷ୍ଠାନର ସମ୍ପାଦିକା ଅଧ୍ୟାପିକା ଶ୍ରୀମତୀ ମନୋରମା ମହାପାତ୍ର ବାଣୀପୀଠ ଉତ୍କଳ ସାହିତ୍ୟ ସମାଜର ପ୍ରତିଷ୍ଠା ଓ ଐତିହ୍ୟ ଏବଂ ପରମ୍ପରାର ଅବତାରଣା କରି ଅତି ପ୍ରାଚୀନ ମୂଲ୍ୟବାନ ପୋଥି ଓ ପତ୍ରିକାର ସଂରକ୍ଷଣ ଦିଗରେ ସାଂସ୍କୃତିକ ବିଭାଗ ଶାସନ ସଚିବଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଓଡ଼ିଆ ସାହିତ୍ୟର ରଥୀମାନଙ୍କ ସୁଯୋଗ୍ୟ ଦାୟାଦ ସୃଷ୍ଟି କରିବା ନିମନ୍ତେ ପ୍ରେରଣା-ପୀଠ, ସର୍ବପ୍ରଥମ ସାହିତ୍ୟାନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ପ୍ରଦୀପ ଆଜି ମିଞ୍ଜି ମିଞ୍ଜି ହୋଇ ଜଳୁଛି । ତ୍ୟାଗ ଓ ଆଦର୍ଶର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଏହି ଅନୁଷ୍ଠାନ ସତ୍ୟ, ନୀତି, ସାଧନା ଓ ଜ୍ଞାନର ପ୍ରଦୀପ ଜାଳିପାରିଥିଲା । ଏହାକୁ ଜଳାଇ ରଖିବା ଦାୟିତ୍ୱ ଉତ୍ତରସୂରୀମାନେ ଗ୍ରହଣ କରିବା ପାଇଁ ଆଗଭର ହୁଅନ୍ତୁ ବୋଲି ସେ ନିବେଦନ କରିଥିଲେ ଏବଂ ଅତିଥିମାନଙ୍କ ପରିଚୟ ପ୍ରଦାନ କରି-ଥିଲେ ।

ଉଦ୍‌ଘାଟକ ପଦ୍ମଶ୍ରୀ ଡଃ ପାଣିଗ୍ରାହୀଙ୍କ ଲିଖିତ ଭାଷଣ ଶ୍ରୀମତୀ ମହାପାତ୍ର ପାଠ କରିଥିଲେ । ଡଃ ପାଣିଗ୍ରାହୀ ଏଥିରେ ଦର୍ଶାଇଥିଲେ ଯେ ଓଡ଼ିଆ ଭାଷା ଅତି ପ୍ରାଚୀନ ଓ ସମୃଦ୍ଧ । ପଞ୍ଚଶତ ବର୍ଷ ତଳେ ଓଡ଼ିଆ ସାହିତ୍ୟର ବିକାଶଧାରା

ଆରମ୍ଭ ହୋଇଥିଲା । ସେ ଉତ୍କଳ ସାହିତ୍ୟ ସମାଜର ସର୍ବାଙ୍ଗୀନ ଉନ୍ନତି କାମନା କରିଥିଲେ ।

ସାଂସ୍କୃତିକ ବିଭାଗ ଶାସନ ସଚିବ ଶ୍ରୀ ମହାପାତ୍ର କହିଲେ ଯେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ଉତ୍କଳ ସାହିତ୍ୟ ସମାଜର ଅବଦାନ ଇତିହାସରେ ଲିପିବଦ୍ଧ ହୋଇ ରହିବ । ଏହି ଐତିହାସିକ ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନର ଉନ୍ନତି ପାଇଁ ସରକାରଙ୍କ ପକ୍ଷରୁ ସବୁ ପ୍ରକାର ସାହାଯ୍ୟ ସହଯୋଗ ଲାଗି ସେ ପ୍ରତିଶ୍ରୁତି ଦେଇଥିଲେ ।

"ଭାରତୀୟ ସାହିତ୍ୟ ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟ" ଶୀର୍ଷକ ଆଲୋଚନାର ଶୁଭାରମ୍ଭ କରି ଶ୍ରୀ ମହାପାତ୍ର କହିଲେ ଯେ ସମଗ୍ର ଭାରତୀୟ ସାହିତ୍ୟ ମଧ୍ୟରେ ଏକ ସାମଞ୍ଜସ୍ୟ ରହିଛି; ଐକ୍ୟବୋଧ ରହିଛି । ନାଟକ, କବିତା, ଉପନ୍ୟାସ ଓ ଗଳ୍ପ ସବୁ କ୍ଷେତ୍ରରେ ଓଡ଼ିଆ ସାହିତ୍ୟ ଅନ୍ୟାନ୍ୟ ଭାରତୀୟ ସାହିତ୍ୟର ସମକକ୍ଷ ।

ମୁଖ୍ୟଅତିଥି ଶ୍ରୀମତୀ ଶତପଥୀ କହିଲେ ଯେ ନିଜର ତ୍ୟାଗ ଓ ସାଧନା ବଳରେ ଏହି ପୀଠକୁ ଉତ୍କଳର ବହୁ ବାଣୀପୁତ୍ର ପବିତ୍ର କରିଛନ୍ତି । ଏ ଜାତିର ଭାଷା ଓ ସାହିତ୍ୟକୁ ଏକ ନିର୍ଦ୍ଦିଷ୍ଟ ରୂପ ଏବଂ ଦିଗଦର୍ଶନ ଦେବା ପାଇଁ ଯେଉଁ ବରପୁତ୍ରମାନେ ସାଧନା ଆରମ୍ଭ କରିଥିଲେ, ତାହା ବ୍ୟର୍ଥ ହୋଇ ନାହିଁ । ସାଧନାର ଧାରା ଅକ୍ଷୁଣ୍ଣ ରହିଛି । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଆମ ଦେଶର ବହୁ କ୍ଷେତ୍ରରେ ବିଭିନ୍ନ ଦିଗରେ ଏକ ନବଚେତନା ଆବିର୍ଭାବ ହେଲା । ଲୋକଙ୍କ ଭିତରେ ନିର୍ଦ୍ଦିଷ୍ଟ ପରିବର୍ତ୍ତନ ଘଟିଲା ଏବଂ ସାହିତ୍ୟରେ ତାର ପ୍ରତିଫଳନ ହେଲା । ସ୍ୱାଧୀନତା ଲାଭ ପରେ ସାହିତ୍ୟ ସୃଷ୍ଟିରେ ଓଡ଼ିଶାରେ ଏକ ସ୍ୱତନ୍ତ୍ରତା ଆରମ୍ଭ ହେଲା । ଏ ସମୟର କବି, ଲେଖକ, ମଣିଷକୁ ନୂଆ ରୂପେ ଚିହ୍ନିବାକୁ ଚେଷ୍ଟା କଲେ ।

ସମ୍ମାନିତ ବକ୍ତା ଡକ୍ଟର ପ୍ରତିଭା ରାୟ କହିଲେ ଯେ ଦେଶରେ ନାନା ବୈଷମ୍ୟ ସତ୍ତ୍ୱେ ଭାରତୀୟ ସଂସ୍କୃତି ବୈଦିକ ପଟ୍ଟଭୂମି ଉପରେ ଆଧାରିତ । ବର୍ତ୍ତମାନ ସମାଜରେ ସବୁ ବାଦର ଲୋପ ପାଇଁ ମାନବତାର ସମୟ ଆସିଛି । ସାହିତ୍ୟ ଉପରେ ସମାଜର ପ୍ରଭାବ ପ୍ରତ୍ୟକ୍ଷ ଭାବେ ପଡ଼ିଥାଏ । ଯାହା ପଢ଼ିଲେ ଲୋକଙ୍କ ପ୍ରାଣକୁ ସ୍ପର୍ଶ କରିବ, ସେହିଭଳି ଲେଖାର ପାଠକ ଆପଣା ଛାଏଁ ବଢ଼ିଚାଲିବେ ।

ଅନ୍ୟ ପ୍ରାଦେଶିକ ଭାଷାର ସାହିତ୍ୟ ସହିତ ଓଡ଼ିଆ ସାହିତ୍ୟର ତୁଳନା କରି ଶ୍ରୀମତୀ ରାୟ କହିଲେ ଯେ ଓଡ଼ିଆ କବିତାର ଦିଗଟି ଅତି ଉନ୍ନତ । ଭାରତୀୟ ସାହିତ୍ୟର ସମକକ୍ଷ କ୍ଷୁଦ୍ରଗଳ୍ପ ଯଥେଷ୍ଟ ଉଚ୍ଚ ମାନର । ଉପନ୍ୟାସ କ୍ଷେତ୍ରରେ ଆମେ ସେତେ ଅଗ୍ରଗତି କରିପାରି ନାହୁଁ । ଓଡ଼ିଶାର କେତେକ ଲେଖକ ଇଂରାଜୀ ସାହିତ୍ୟରେ ମଧ୍ୟ ଯଥେଷ୍ଟ କୃତିତ୍ୱ ଅର୍ଜନ କରିଛନ୍ତି ।

ସଭାପତି ଶ୍ରୀ କର ନିଜର ସଭାପତି ଅଭିଭାଷଣରେ କହିଲେ ଯେ ଓଡ଼ିଆ ସାହିତ୍ୟ ନିଶ୍ଚିତ ଭାବରେ ଉତ୍କୃଷ୍ଟ; ମାତ୍ର ଉପଯୁକ୍ତ ପ୍ରଚାର, ପ୍ରସାର ଓ ଅନୁବାଦ ଅଭାବରୁ ବହୁ ଶ୍ରେଷ୍ଠ କୃତିର ଉପଯୁକ୍ତ ମୂଲ୍ୟାୟନ ହୋଇପାରୁ ନାହିଁ । ସମାଜ, ପରିବେଶ ଓ ପରିବେଷ୍ଟନୀର ପ୍ରଭାବ ସାହିତ୍ୟ ଉପରେ ପଡ଼ିଥାଏ । ସମାଜର ଗତି ସହ ତାଳ ଦେଇ ସାହିତ୍ୟ ଗତିଥାଏ ବୋଲି ସେ କହିଥିଲେ ।

ସାହିତ୍ୟ ସମାଜର ଉପସଭାପତି ଶ୍ରୀ ଶୁକଦେବ ସାହୁ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ସଂଗଠନ ସମ୍ପାଦକ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ ଧନ୍ୟବାଦ ଅର୍ପଣ କରିଥିଲେ ।

ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ହୋଇଥିବା ବିଭିନ୍ନ ପ୍ରତିଯୋଗିତାର କୃତୀ ପ୍ରତିଯୋଗୀମାନଙ୍କୁ ଶ୍ରୀମତୀ ଶତପଥୀ ପୁରସ୍କାର ପ୍ରଦାନ କରିଥିଲେ ।

ଶେଷରେ ଅନୁଷ୍ଠିତ ସଙ୍ଗୀତ କାର୍ଯ୍ୟକ୍ରମରେ ବିଶିଷ୍ଟ ସଙ୍ଗୀତଜ୍ଞ ଶ୍ରୀ ପ୍ରଫୁଲ୍ଲ କର, ଶ୍ରୀ ନରୋତ୍ତମ ସାହୁ, ଶ୍ରୀ ଅଗଣି ପୃଷ୍ଟି, ମହମ୍ମଦ ୟୁସୁଫ, ଶ୍ରୀମାନ ମହାପ୍ରସାଦ କର, କୁମାରୀ ଇତିଶ୍ରୀ କର, କୁମାରୀ ଆଦ୍ୟାଶା ରାୟ, ପୁଷ୍ପାଞ୍ଜଳି କାନୁନଗୋ, ପ୍ରଣତି ପତି ପ୍ରମୁଖ ଓଡ଼ିଶୀ ସଙ୍ଗୀତ ଓ ଭଜନ ପରିବେଷଣ କରିଥିଲେ

ଦୁଇ ଦିନ ଧରି ପୁସ୍ତକ ପ୍ରଦର୍ଶନୀରେ ଉତ୍କଳ ସାହିତ୍ୟ ସମାଜ ପ୍ରକାଶନ ବିଭାଗ, ଗୋପବନ୍ଧୁ ସାହିତ୍ୟ ମନ୍ଦିର, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିଦ୍ୟାପୁରୀ, ଓଡ଼ିଶା ବୁକ୍ ଷ୍ଟୋର, ନାଳନ୍ଦା, ଗ୍ରନ୍ଥମନ୍ଦିର, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ପ୍ରଭୃତି ପ୍ରକାଶନ ସଂସ୍ଥା ପ୍ରକାଶିତ ପୁସ୍ତକ ପ୍ରଦର୍ଶନ କରିଥିଲେ । ଶ୍ରୀମତୀ ଶକୁନ୍ତଳା ପରିଡ଼ା ତାଳପତ୍ରରେ ଖୋଦିତ ଲେଖା ପ୍ରଦର୍ଶନ କରିଥିଲେ ।

# ଉତ୍କଳ ପ୍ରଦେଶ ସୁବର୍ଣ୍ଣ ଜୟନ୍ତୀ

ତା ୫।୪।୮୬ ସନ୍ଧ୍ୟାରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଓଡ଼ିଶାର ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନଠାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ଆୟୋଜିତ ଏକ ମନୋଜ୍ଞ ସାରସ୍ୱତ ସମାରୋହରେ ଐତିହାସିକ, ଗବେଷକ ଡଃ ମନ୍ମଥନାଥ ଦାସ କହିଲେ ଯେ ସାମାଜିକ, ସାଂସ୍କୃତିକ, ଆଧ୍ୟାତ୍ମିକ, ରାଜନୈତିକ ସବୁ କ୍ଷେତ୍ରରେ ଉତ୍କଳ ସମଗ୍ର ଦେଶରେ ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିପାରିଛି । ମହାନ ଆଧ୍ୟାତ୍ମିକ ଚେତନା, ଅଦ୍ଭୁତ ରାଜନୈତିକ ଶକ୍ତି ଏବଂ ସୃଜନଶୀଳତା ଦ୍ୱାରା ଏହି ରାଜ୍ୟ ଗୁଣବିମଣ୍ଡିତ ହୋଇ ନିଜସ୍ୱ ଗରିମା ପ୍ରତିପାଦନ କରିପାରିଛି । ସବୁ ପ୍ରକାର ମତ, ସଂପ୍ରଦାୟର ମୂଳକେନ୍ଦ୍ର ଜଗନ୍ନାଥଙ୍କ ଭୂମି ଉତ୍କଳ ଏ ପର୍ଯ୍ୟନ୍ତ ମଧ୍ୟ ଧର୍ମର ତାତ୍ତ୍ୱିକ ମୂଲ୍ୟ ବଜାୟ ରଖିପାରିଛି । ଛତ୍ରପତି

ଶିବାଜୀ ଏହି ପବିତ୍ର ଭୂମିକୁ 'ଧର୍ମଭୂମି' ବୋଲି କହୁଥିଲେ । କପିଳ ସଂହିତାର ବର୍ଣ୍ଣନାନୁଯାୟୀ ବର୍ଷ (ଦେଶ)ମାନଙ୍କ ମଧ୍ୟରେ ଭାରତ ଶ୍ରେଷ୍ଠ ଏବଂ ଭାରତର ରାଜ୍ୟମାନଙ୍କ ମଧ୍ୟରେ ଉତ୍କଳ ଶ୍ରେଷ୍ଠ । ସାମୂହିକ ପ୍ରଚେଷ୍ଟା, ଐକ୍ୟବୋଧ, କର୍ମପ୍ରେରଣା ଦ୍ୱାରା ଆମେ ଉତ୍କଳବାସୀ କର୍ମଠ ଓ ବଳିଷ୍ଠ ଜାତି ରୂପେ ପୁନର୍ବାର ଛିଡ଼ା ହୋଇପାରିବୁ । ଆଜିର ପବିତ୍ର ଦିବସରେ ଏହା ଆମର ସଂକଳ୍ପ ହେଉ ।

ଓଡ଼ିଶାର ସାମାଜିକ ସ୍ଥିରତା ହିଁ ଆମ ଭାଷା, ସାହିତ୍ୟ, ସଂସ୍କୃତି, ପରମ୍ପରା, ଚାଲିଚଳନକୁ ଅତୁଟ ରଖିପାରିଛି ବୋଲି ମତ ଦେଇ ଡଃ ଦାସ କହିଲେ ଯେ ଉତ୍‌ଥାନ-ପତନ, ଆଭ୍ୟନ୍ତରୀଣ ବିଶୃଂଖଳା ଏବଂ ବାହ୍ୟ ଆକ୍ରମଣ ମଧ୍ୟରେ ଆମେ ଆମର ସ୍ଥିରତା ବଜାୟ ରଖିପାରିଛୁ । ସେ କହିଲେ ଯେ ଉତ୍କଳ ଆର୍ଯ୍ୟ ଓ ଦ୍ରାବିଡ଼ ଉଭୟ ସଂସ୍କୃତିର ମିଳନ ସ୍ଥଳ ଥିଲା । ଭାରତର ଉତ୍ତର ପଥ ଓ ଦକ୍ଷିଣ ପଥର ଏହା ଥିଲା ସଂଯୋଗସ୍ଥଳୀ । ସୁଦୂର ଏସୀୟମାନଙ୍କ ପାଇଁ କଳିଙ୍ଗ ଥିଲା ପ୍ରବେଶଦ୍ୱାର । କଳିଙ୍ଗର ନୌବାଣିଜ୍ୟ ଦ୍ୱାରା ଭାରତୀୟ ସଂସ୍କୃତି ଦକ୍ଷିଣ-ପୂର୍ବ ଏସିଆ ଏବଂ ପୃଥିବୀର ଅନ୍ୟ ସ୍ଥାନକୁ ପରିବ୍ୟାପ୍ତ ହୋଇଥିଲା । ଭାରତ ଏବଂ ବହିର୍ଭାରତ ମଧ୍ୟରେ ଉତ୍କଳ ହେଉଛି ଯୋଗସୂତ୍ର । ପ୍ରକୃତି ଉତ୍କଳକୁ ଏପରି ଭାବେ ସୃଷ୍ଟି କରିଛି, ଏଭଳି ଏକ ପରିବେଶ ଏଠାରେ ଅଛି, ଯାହା ମଣିଷର ଦୈନନ୍ଦିନ ଜୀବନରେ ନିଜତ୍ୱର ପରିପ୍ରକାଶ ପାଇଁ ଏକ ସ୍ପୃହା ଓ ପ୍ରେରଣା ସୃଷ୍ଟି କରିବ । ପରବର୍ତ୍ତୀ କାଳରେ ଏହି ମହାନ ଉତ୍କଳଭୂମି ଛିନ୍ନମସ୍ତା, ଛିନ୍ନହସ୍ତା, ହେଲା; ଯେତେବେଳେ ମଧୁବାବୁ, ଗୋପବନ୍ଧୁ ଏବଂ ପାରଳା ମହାରାଜାଙ୍କ ପରି କ୍ଷଣଜନ୍ମାମାନେ ଜନ୍ମ ହୋଇ ଏହାକୁ ପୂର୍ଣ୍ଣାଙ୍ଗ ଅବୟବ ଦେଇଥିଲେ ବୋଲି ସେ କହିଥିଲେ ।

ପ୍ରାରମ୍ଭରେ ଶ୍ରୀ ନବୀନ ପଟ୍ଟନାୟକ ଏବଂ ତାଙ୍କର ସାଥୀମାନେ 'ସର୍ବେଷାଂମ୍ ନୋ ଜନନୀ ଭାରତ....'' ସଙ୍ଗୀତ ଗାନ କଲା ପରେ ଓ ଅତିଥିମାନେ ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ ଓ ପାରଳା ମହାରାଜାଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କଲା ପରେ ବୟୋଜ୍ୟେଷ୍ଠ ସାହିତ୍ୟିକ କବି ଡକ୍ଟର କାଳିନ୍ଦୀଚରଣ ପାଣିଗ୍ରାହୀ ଦୀପ ପ୍ରଜ୍ୱଳନ କରି ସମାରୋହକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରି କହିଲେ ଯେ ଉତ୍କଳୀୟ ସମାଜର ବଳିଷ୍ଠ ନୈତିକତା, ଦେଶ-ପ୍ରେମ ଏବଂ ଉତ୍କୃଷ୍ଟ ସାହିତ୍ୟ ପାଇଁ ଏହା ଏକ ସ୍ୱତନ୍ତ୍ର ଜାତି ରୂପେ ଛିଡ଼ା ହୋଇପାରିଛି । ଏ ଜାତିର ବୈଚିତ୍ର୍ୟ ଅତି ମହାନ୍ । ଭାଷା, ଧର୍ମ, ରୀତି, ନୀତି ସବୁ କ୍ଷେତ୍ରରେ ଆମ ଭିତରେ ଏକ ବୈଶିଷ୍ଟ୍ୟର ଝଲକ ରହିଛି । ଏ ଜାତିର ମୂଳ ଭିତ୍ତି ହେଲା ଜଗନ୍ନାଥ ସଂସ୍କୃତି ଏବଂ ଏହା ବିଶ୍ୱଚେତନାର ପ୍ରତୀକ । ଐକାନ୍ତିକ ଉଦ୍ୟମ ହେଲେ ଏ ଜାତି ପୁନର୍ବାର ମହୀୟାନ ହୋଇ ମୁଣ୍ଡ ଟେକି-

ଧାରିବା । ଆମେ ଆମର ପୂର୍ବସୂରୀମାନଙ୍କର ଯଥାର୍ଥ ଦାୟାଦ ହୋଇପାରି ନାହୁଁ ବୋଲି କହି ଡକ୍ଟର ପ୍ରାଣଗ୍ରାହୀ ଦୁଃଖ ପ୍ରକାଶ କରିଥିଲେ ।

ଲେଖକ, ବିଧାୟକ ତଥା ସାମ୍ବାଦିକ ଡ଼କ୍ଟର ଶ୍ରଦ୍ଧାକର ସୂପକାର "ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା : ଭାଷା ଓ ସାହିତ୍ୟ" ସମ୍ପର୍କରେ ଆଲୋଚନା କରି କହିଲେ ଯେ ଗ୍ରାମାଞ୍ଚଳର ଅନେକ ଅପ୍ରକାଶିତ ନୂତନ ବୁଦ୍ଧିମନ୍ତ ପ୍ରତିଭାମାନଙ୍କୁ ଆମକୁ ପ୍ରକାଶ୍ୟକୁ ଆଣିବାକୁ ପଡ଼ିବ । ଏହି ନୀରବ ସାରସ୍ୱତ ସାଧକମାନେ ସୁଯୋଗ ଅଭାବରୁ ବିଜ୍ଞାପିତ କିମ୍ବା ପ୍ରଚାରିତ ହୋଇପାରି ନାହାନ୍ତି । ଏମାନଙ୍କ ଲେଖା ପତ୍ର-ପତ୍ରିକାରେ ପ୍ରକାଶ ପାଏ ନାହିଁ । ବଣମଲ୍ଲୀ ପରି ବଣରେ ସେମାନେ ଝଡ଼ି-ପଡ଼ନ୍ତି ।

କବି ଅଜର ଓ ଅମର । ଆଜି ଆମେ ଏମାନଙ୍କୁ ନ ପଚାରିଲେ ମଧ୍ୟ ସମୟ ତାଙ୍କୁ କେବେ ଭୁଲିବ ନାହିଁ । ଏ ସମ୍ପର୍କରେ ଡକ୍ଟର ଶ୍ରଦ୍ଧାକର ସୂପକାର ଏକଦା ବିସ୍ମୃତ କବି ଭୀମ ଭୋଇଙ୍କ ଉଦାହରଣ ଦେଇଥିଲେ ।

ଆମ ସାହିତ୍ୟର ସ୍ରୋତ ଦିନକୁ ଦିନ ଅଧିକ ବେଗବତୀ ହେବାକୁ ଲାଗିଛି ବୋଲି କହି ଡଃ ସୂପକାର କହିଲେ ଯେ କବି ଓ ଲେଖକମାନେ ସେମାନଙ୍କ ଲେଖନୀ ମାଧ୍ୟମରେ ଆମ ଭିତରେ ଦେଶପ୍ରେମକୁ ପ୍ରଜ୍ଜ୍ୱଳିତ କରିଛନ୍ତି । ସାହିତ୍ୟ ଲୋକଙ୍କୁ ଯୋଡ଼ିବାରେ ସାହାଯ୍ୟ କରେ । ଏହି ଯୋଡ଼ିବାରୁ ହିଁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସମ୍ଭବପର ହୋଇପାରିଥିଲା । ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନ ପାଇଁ ପ୍ରଗାଢ଼ ଉଦ୍ୟମ କରିଥିବା ପାରଳା ମହାରାଜା ଏବଂ ଦକ୍ଷିଣ ଓଡ଼ିଶାର ସେହି ସାଧକମାନଙ୍କ ନିକଟରେ ଆମେ ବିଶେଷ ଋଣୀ । ସମ୍ବଲପୁର କେନ୍ଦ୍ର ପ୍ରଦେଶରେ ଥିଲା ବେଳେ କବି ଗଙ୍ଗାଧର ମେହେର ଏକ ସ୍ୱତନ୍ତ୍ର ଓଡ଼ିଶାର ସ୍ୱପ୍ନ ଦେଖିଥିଲେ । ଡଃ ସୂପକାର ୫୦ ବର୍ଷର ସାହିତ୍ୟ କୃତି ସମ୍ପର୍କରେ ଆଲୋଚନା କରି ବହୁ ତଥ୍ୟ ଉପସ୍ଥାପିତ କରିଥିଲେ

ହିନ୍ଦ୍ ସେବକ ସଂଘର କେନ୍ଦ୍ରୀୟ ଅଧ୍ୟକ୍ଷ ଶ୍ରୀ ଶ୍ୟାମସୁନ୍ଦର ମିଶ୍ର ମୁଖ୍ୟଅତିଥି ରୂପେ ଯୋଗ ଦେଇ କହିଲେ ଯେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପୂର୍ବରୁ କେତେକ ଯୁକ୍ତି କରୁଥିଲେ ଯେ ଅର୍ଥନୀତି ଦୃଷ୍ଟିରୁ ଓଡ଼ିଶା ନିଜ ଗୋଡ଼ରେ ଛିଡ଼ା ହୋଇ-ପାରିବ ନାହିଁ । କିନ୍ତୁ ସ୍ୱତନ୍ତ୍ର ଉତ୍କଳର ସ୍ୱପ୍ନଦ୍ରଷ୍ଟା କେତେକ ମହାପୁରୁଷ ଏହାର ଘୋର ବିରୋଧ କରୁଥିଲେ । ସ୍ୱର୍ଗୀୟ ନିରଞ୍ଜନ ପଟ୍ଟନାୟକଙ୍କ ରଚିତ 'ଓଡ଼ିଆ ମୁଭ୍‌ମେଣ୍ଟ' ବହିଟି ବହୁ ଯୁବକଙ୍କ ମଧ୍ୟରେ ଓଡ଼ିଆ ପ୍ରୀତି ଜାଗ୍ରତ କରିଥିଲା । ସେତେବେଳେ ଓଡ଼ିଆ ପ୍ରତିଭାକୁ ସୀମାବଦ୍ଧ କରି ରଖିବା ପାଇଁ ବହୁ ଅପଚେଷ୍ଟା ହୋଇଥିଲା । ଉତ୍କଳମଣି, ଉତ୍କଳଗୌରବ କହି ଆମେ ଗୋପବନ୍ଧୁ ଏବଂ ମଧୁ-ବାବୁଙ୍କ ପରି ସର୍ବଭାରତୀୟ ପ୍ରତିଭାକୁ ଓଡ଼ିଶା ଭିତରେ ହିଁ ରଖିଦେଲୁ ।

ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ବଞ୍ଚାଇ ରଖିବା ପାଇଁ ଆପ୍ରାଣ ଉଦ୍ୟମ ହେଉ ବୋଲି ସେ ଆହ୍ୱାନ ଜଣାଇଥିଲେ ।

ଉତ୍କଳ ସମ୍ମିଳନୀର ସାଧାରଣ ସମ୍ପାଦକ ଆଇନଜୀବୀ ଶ୍ରୀ ବସନ୍ତକୁମାର ପାଣିଗ୍ରାହୀ କହିଲେ ଯେ ଯେଉଁ ପୂର୍ବସୂରୀମାନଙ୍କ ସାଧନା, ନିଷ୍ଠା ଓ ତ୍ୟାଗ ବଳରେ ଆମେ ସ୍ୱତନ୍ତ୍ର ଓଡ଼ିଶା ପାଇଛୁ, ସେମାନଙ୍କ ପ୍ରତି କୃତଜ୍ଞ ହେବା ଉଚିତ । କାରଣ ସେମାନେ ଏହା କରି ନ ଥିଲେ ଆମର ଅବସ୍ଥା କଣ ହୋଇଥାନ୍ତା, ତାହା ଯେଉଁମାନେ ବିଚ୍ଛିନ୍ନାଞ୍ଚଳରେ ଅଛନ୍ତି ସେହିମାନେ ହିଁ କହିପାରିବେ ।

ଉତ୍କଳ ସାହିତ୍ୟ, ସମାଜ ଉତ୍କଳ ସମ୍ମିଳନୀର ମାନସପୁତ୍ର ବୋଲି ବର୍ଣ୍ଣନା କରି ଶ୍ରୀ ପାଣିଗ୍ରାହୀ କହିଲେ ଯେ କଟକଠାରେ ୧୯୦୩ରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ୫ମ ପ୍ରସ୍ତାବ ଅନୁଯାୟୀ ଉତ୍କଳ ସାହିତ୍ୟ ସମାଜ ପ୍ରତିଷ୍ଠିତ ହୋଇଥିଲା । ଉତ୍କଳ ସମ୍ମିଳନୀର ନେତୃବୃନ୍ଦ ଉତ୍କଳ ସାହିତ୍ୟ ସମାଜର କର୍ମକର୍ତ୍ତା ଥିଲେ । ଭାଷାର ସୁରକ୍ଷା ପାଇଁ ଶାସନର ପୃଷ୍ଠପୋଷକତା ଦରକାର ।

ଇଂଲଣ୍ଡରେ ଥିବା ଓଡ଼ିଆ ଚିତ୍ରଶିଳ୍ପୀ ଶ୍ରୀ ପ୍ରଫୁଲ୍ଲକୁମାର ମହାନ୍ତି କହିଲେ ଯେ ଆମକୁ ସବୁ କଥା କହିବାକୁ ଭଲ ଲାଗେ । କିନ୍ତୁ କାର୍ଯ୍ୟରେ କେହି କରନ୍ତି ନାହିଁ । ଓଡ଼ିଶା ଖଣିଜ ଓ ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଥାଇ ଆମେ ଦରିଦ୍ର କାହିଁକି ଓ ଆମେ କାହିଁକି ପ୍ରତିଷ୍ଠା ଅର୍ଜନ କରିପାରୁ ନାହୁଁ, ତାହା ହିଁ ବଡ଼ ପ୍ରଶ୍ନ । ଆମ ଦାବୀ ପ୍ରକାଶ ପାଇଁ ଉପଯୁକ୍ତ ମାଧ୍ୟମ ଲୋଡ଼ା । ବାହାରେ ଯାଇ ଛିଡା ହେବାର ଯେଉଁ ଶକ୍ତି ମୁଁ ପାଇଛି, ତାହା ଆପଣମାନଙ୍କ ସ୍ନେହ ସଦିଚ୍ଛା ଏବଂ ଜଗନ୍ନାଥଙ୍କ କୃପା ବଳରେ । ଆମ ହାତରେ ଦୁଇଟି ଶକ୍ତି ରହିଛି । ଗୋଟିଏ ସୃଜନ ପାଇଁ ଏବଂ ଅନ୍ୟଟି ଧ୍ୱଂସ ପାଇଁ । ସୃଜନୀଶକ୍ତିର ବିକାଶ ଲୋଡ଼ା ବୋଲି ସେ କହିଥିଲେ ।

ଉତ୍ସବରେ ପୌରୋହିତ୍ୟ କରି ସାହିତ୍ୟ ସମାଜର ସଭାପତି ଶ୍ରୀ ବିଚିତ୍ରାନନ୍ଦ କର କହିଲେ ଯେ ଭାଷା ହେଉଛି—ଜାତିର ପ୍ରାଣ । ଭାଷା ବଞ୍ଚିଲେ ଜାତି ବଞ୍ଚିବ । ଆମ ଭାଷା, ସାହିତ୍ୟ, ସଂସ୍କୃତିର ସମୃଦ୍ଧି ପାଇଁ ଆମକୁ ବହୁତ କିଛି କରିବାର ଅଛି ।

ଉତ୍କଳ ସାହିତ୍ୟ ସମାଜର ସାଧାରଣ ସମ୍ପାଦିକା ଅଧ୍ୟାପିକା ଶ୍ରୀମତୀ ମନୋରମା ମହାପାତ୍ର ପ୍ରାରମ୍ଭିକ ସୂଚନା ଦେଇ କହିଲେ ଯେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ନିର୍ମାତା ଓ ଦେଶର ମହାନ ବରପୁତ୍ରମାନଙ୍କର ନିଷ୍ଠା ଏବଂ ସାଧନା ଆମ ଭିତରେ ସଞ୍ଚାରିତ ହେଉ । ସ୍ୱତନ୍ତ୍ର ଉତ୍କଳ ଗଠନର ସ୍ୱପ୍ନ ଦେଖିଥିବା ସମସ୍ତେ ଉତ୍କଳ ସାହିତ୍ୟ ସମାଜ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ସାହିତ୍ୟ ସମାଜ ମଧୁବାବୁଙ୍କ ମାନସପୁତ୍ର । []

ସେ କହିଲେ ଯେ ଓଡ଼ିଶାର ଐତିହ୍ୟ, ପରମ୍ପରା ଓ ଅତୀତ ଅତି ମହାନ୍ । ଏହାର ଭବିଷ୍ୟତ ମଧ୍ୟ ସେହିଭଳି ହେବ ବୋଲି ଆମେ ଆଶା କରୁ । ନବୀନ ଉତ୍କଳ ପାଇଁ ଯୁବଶକ୍ତି କିପରି ବଦ୍ଧପରିକର ହେବେ, ସେଥିପାଇଁ ପଥ ପ୍ରଦର୍ଶନ ଆବଶ୍ୟକ । ମୂର୍ତ୍ତିପୂଜା ସହ ନୀତିପୂଜା ହେବା ଅତ୍ୟାବଶ୍ୟକ ।

ସାହିତ୍ୟ ସମାଜର ଉପସଭପତି ଶ୍ରୀ ଶୁକଦେବ ସାହୁ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ଶେଷରେ ସଂଗଠନ ସମ୍ପାଦକ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ ଧନ୍ୟବାଦ ଅର୍ପଣ କରିଥିଲେ .

# ପ୍ରତିକୃତି ଉନ୍ମୋଚନ

## ୨୯ । ୪ । ୮୭

ଅଦ୍ୟ ସନ୍ଧ୍ୟାରେ ଓଡ଼ିଶାର ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନରେ ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ କବିତା କଳ୍ପଲତା ଅପର୍ଣ୍ଣା ଦେବୀଙ୍କର ପ୍ରତିକୃତି ଉନ୍ମୋଚନ କରି ସାହିତ୍ୟିକା ଶ୍ରୀମତୀ କୁନ୍ତଳାକୁମାରୀ ଆଚାର୍ଯ୍ୟ କହିଲେ ଯେ କବିତା କଳ୍ପଲତା ଅପର୍ଣ୍ଣା ଦେବୀଙ୍କ କାବ୍ୟକୃତିର ଛତ୍ରେ ଛତ୍ରେ ଈଶ୍ୱରଙ୍କ ପ୍ରତି ଅସୀମ ଲୟ ପ୍ରକଟିତ ହୋଇଛି । ତାଙ୍କ ପ୍ରତିଭା ହେଉଛି ବିଭୂନ୍ଦର କୃପା ।

ଏହି ଉପଲକ୍ଷେ ଆୟୋଜିତ ଏକ ମନୋଜ୍ଞ ସମାରୋହରେ ଉତ୍କଳ ସାହିତ୍ୟ ସମାଜର ସଭାପତି ଶ୍ରୀ ବିଚିତ୍ରାନନ୍ଦ କର ପୌରୋହିତ୍ୟ କରିଥିଲେ ।

ନାରୀ କବି ଅପର୍ଣ୍ଣା ଦେବୀଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଶ୍ରୀମତୀ ଆଚାର୍ଯ୍ୟ କହିଲେ ଯେ ତାଙ୍କର ପ୍ରଭାବ ମୋ ଜୀବନଧାରାକୁ ବଦଳାଇ ଦେଇଥିଲା । ଧାନ ଉଷେଇବା, ଢେଙ୍କିରେ କୁଟିବା, ରୋଷେଇ କାର୍ଯ୍ୟଠାରୁ ଆରମ୍ଭ କରି ଯାବତ୍‌ ତୀୟ ଗୃହକାର୍ଯ୍ୟ ସହିତ ସେ ସାହିତ୍ୟ ସାଧନା କରି ପାରିଥିଲେ । ଏହା ସେ ସମୟର ରକ୍ଷଣଶୀଳ ସମାଜରେ ଆଶ୍ଚର୍ଯ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ଚିନ୍ତାଧାରା ସ୍ୱାଧୀନ ଏବଂ ଦେଶପ୍ରୀତି ଅସୀମ ଥିଲା । ସେ କେବଳ କଲମ ଧରି ନ ଥିଲେ, ଜଣେ ବିଶିଷ୍ଟା ସମାଜସେବିକା ମଧ୍ୟ ଥିଲେ । ଅପର୍ଣ୍ଣା ଦେବୀଙ୍କୁ ଆମେ ହଜେଇ ଦେବା ଆଗରୁ ଏଭଳି ସମୁଚିତ ସ୍ମୃତିଚାରଣ ଦ୍ୱାରା ପୁଣି ତାଙ୍କୁ ସାଉଁଟି ଆଣିପାରିଛୁ । ଉତ୍କଳ ସାହିତ୍ୟ ସମାଜର ଏହି ପୀଠରୁ ପ୍ରତିଭା ପୂଜାର କୈତ୍ର ଗାନ ହେଉଥାଉ ବୋଲି ସେ ଆଶା କରିଥିଲେ ।

ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ସଦାଶିବ ମିଶ୍ର ଏହି ମହୀୟସୀ କବୟିତ୍ରୀଙ୍କ ପ୍ରତି ଶ୍ରଦ୍ଧାର୍ପଣ କରି କହିଲେ ଯେ କେବଳ ଚାଟଶାଳୀ ପର୍ଯ୍ୟନ୍ତ ଶିକ୍ଷାଗତ

ଯୋଗ୍ୟତା ହାସଲ କରି ସେ ଯେଉଁ ଭଳି ଉଚ୍ଚକୋଟୀର ସାହିତ୍ୟକୃତି ସୃଷ୍ଟି କରି ଯାଇଛନ୍ତି, ତାହା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ସେ କବିବର ରାଧାନାଥ ରାୟଙ୍କର ଗ୍ରନ୍ଥାବଳୀ ଆମୂଳଚୂଳ ମୁଖସ୍ଥ କରିଥିଲେ ଏବଂ ତାଙ୍କରି ଢାଞ୍ଚାରେ ହିଁ କାବ୍ୟ-କବିତା ରଚନା କରିଥିଲେ । ତାଙ୍କ ପୁସ୍ତକଗୁଡ଼ିକର ମୁଦ୍ରଣରେ କେନ୍ଦୁଝର ରାଜ ପରିବାର ଖୁବ୍ ସାହାଯ୍ୟ କରିଥିଲେ । ଶ୍ରୀରାମଚନ୍ଦ୍ର ଭବନରେ ପ୍ରତିକୃତି ଉନ୍ମୋଚନ ଦ୍ୱାରା ତାଙ୍କ ପ୍ରତିଭା ପ୍ରତି ଉପଯୁକ୍ତ ନ୍ୟାୟ ଓ ସମ୍ମାନ ମିଳିଛି । ତାଙ୍କ କୃତିଗୁଡ଼ିକ ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ ହେଉ ବୋଲି ସେ ମତ ଦେଇଥିଲେ ।

ଉତ୍ସବରେ ସମ୍ମାନିତ ଅତିଥି ରୂପେ ଯୋଗ ଦେଇ ପୂର୍ବତନ ଉପକୁଳପତି ତଥା 'ନିର୍ମାଲ୍ୟ' ପତ୍ରିକାର ସମ୍ପାଦକ ଶ୍ରୀ ହରିହର ବାହିନୀପତି କହିଲେ ଯେ ସେତେବେଳର ଗଭୀର ଆର୍ଥିକ ଅନାଟନ ମଧ୍ୟରେ ସେ ଯେ ଏତେଗୁଡ଼ିଏ ପ୍ରକାଶନ କରିପାରିଥିଲେ, ତାହା ବାସ୍ତବରେ ପ୍ରଶଂସନୀୟ । ସେ ଯୁଗଧର୍ମୀ କାଳଜୟୀ ସାହିତ୍ୟ ସୃଷ୍ଟି କରିଥିଲେ । ସେ ଚିରକାଳ ଓଡ଼ିଆ ସାହିତ୍ୟ ଆକାଶରେ ପ୍ରତିଭାତ ହୋଇ ରହିବେ ।

ଅନ୍ୟତମ ସମ୍ମାନିତ ଆଲୋଚକ ଅଧ୍ୟାପକ ଡଃ ଶ୍ୟାମସୁନ୍ଦର ମିଶ୍ର କହିଲେ ଯେ କବିତା କଳ୍ପଲତା ଆମ ସଂସ୍କୃତି ଓ ପରମ୍ପରାକୁ ପୌରାଣିକ ଆଖ୍ୟାନ ମାଧ୍ୟମରେ ସାହିତ୍ୟ ମଧ୍ୟରେ ଭର୍ତ୍ତି କରିଥିଲେ । ଅପର୍ଣ୍ଣାଙ୍କ ପ୍ରତ୍ୟେକ କାବ୍ୟରେ ନାରୀ ଚରିତ୍ର ଉପରେ ପ୍ରାଧାନ୍ୟ ଦିଆଯାଇଛି । ତାଙ୍କର କାବ୍ୟ-କବିତାରେ ଆଧ୍ୟାତ୍ମିକତା, ବିଭୁପ୍ରେମ, ଆତ୍ମସମର୍ପଣ ଭାବ ଫୁଟି ଉଠିଛି । ତାଙ୍କ ଜୀବନୀର ଏକ ପୂର୍ଣ୍ଣାଙ୍ଗ ସଂକଳନ ହେବା ଉଚିତ ।

ଉତ୍କଳ ସାହିତ୍ୟ ସମାଜର ସମ୍ପାଦିକା ଅଧ୍ୟାପିକା ଶ୍ରୀମତୀ ମନୋରମା ମହାପାତ୍ର ଏହି ବିଶିଷ୍ଟ ନାରୀ କବିଙ୍କ ପ୍ରତି ଶ୍ରଦ୍ଧା ନିବେଦନ କରି କହିଲେ ଯେ ସହଜ, ସରଳ ଓ ସାଧାରଣ ଭାବରେ ମହିଳାଙ୍କ ପ୍ରତିଭାକୁ ସମାଜରେ ସ୍ୱୀକୃତି ଦିଆଯାଏ ନାହିଁ । ବହୁ କବୟିତ୍ରୀ ଓ ଲେଖିକା ଏ ରାଜ୍ୟରେ ଅଣହେଳାରେ ସୁଯୋଗ ନ ପାଇ ଏକାନ୍ତରେ ଝଡ଼ି ପଡ଼ୁଛନ୍ତି । କିନ୍ତୁ କବିତା କଳ୍ପଲତା ଅପର୍ଣ୍ଣା ପ୍ରତିକୂଳ ପରିବେଶ ଭିତରେ ପରମ୍ପରା ମାନି ସମ୍ମାନଜନକ ଭାବରେ ସଂଗ୍ରାମ କରି ନିଜର କାବ୍ୟିକ ପ୍ରତିଭାକୁ ପ୍ରକାଶ କରି ପାରିଥିଲେ । ସେ ନିଜେ ବିଷପାନ କରି ଅମୃତ ବିତରଣ କରିଥିଲେ । ସୁବିଧା ଓ ସୁଯୋଗ ପାଇଥିଲେ ସେ ନିଶ୍ଚୟ ଜାତୀୟ ସ୍ୱୀକୃତି ଲାଭ କରିଥାନ୍ତେ । ସେ ଜଣେ ସିଦ୍ଧହସ୍ତା ଶିଶୁ ସାହିତ୍ୟିକା ଥିଲେ । ଲୁକ୍‌କାୟିତ ପ୍ରତିଭାକୁ ଆଲୋକକୁ ଆଣିବାର ନୈତିକ ଦାୟିତ୍ୱ ବାଣୀପୀଠ ଉତ୍କଳ ସାହିତ୍ୟ ସମାଜର ରହିଅଛି ।

ଅପର୍ଣ୍ଣା ଦେବୀଙ୍କ କନିଷ୍ଠ ପୁତ୍ର ଶ୍ରୀ ବ୍ରଜବନ୍ଧୁ ମିଶ୍ର, ଆଡଭୋକେଟ କହିଲେ ଯେ ବୋଉ ଧନୀ ପରିବାରରୁ ଆସି ଦରିଦ୍ର ପରିବାର ମଧ୍ୟରେ ଚଳିଲେ । ମୋ ବୋଉ ସ୍ୱତଃସ୍ଫୂର୍ତ୍ତ କବି ଥିଲେ । ସେ ସର୍ବଦା ଅଧ୍ୟୟନଶୀଳା ଥିଲେ । ତାର ପ୍ରତିଭାର ବିକାଶ ପାଇଁ ବାଳକୃଷ୍ଣ କର, ଗୋପାଳଚନ୍ଦ୍ର ପ୍ରହରାଜ, ଅଧ୍ୟାପକ ରାମଚନ୍ଦ୍ର ମହାପାତ୍ର ପ୍ରମୁଖ ତାଙ୍କୁ ଖୁବ୍ ସାହାଯ୍ୟ କରିଥିଲେ ।

ଶେଷରେ ସଭାପତି ଶ୍ରୀ କର ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହିଲେ ଯେ ସାହିତ୍ୟରେ ନାରୀ ଓ ପୁରୁଷ ଉଭୟ ସମାନ । ଓଡ଼ିଆ ସାହିତ୍ୟର ବିକାଶ ପାଇଁ ବିଂଶଶତାବ୍ଦୀର ଦାନ ଉଲ୍ଲେଖଯୋଗ୍ୟ । କବିତା କଲ୍ପଲତା ମଧ୍ୟ ବିଂଶ ଶତାବ୍ଦୀରେ ପ୍ରତିଭାତ ହେଲେ । ସୁଯୋଗ ଓ ସୁବିଧା ଅଭାବରୁ ଏହିପରି ବହୁ ପ୍ରତିଭା ବିକଶିତ ହୋଇପାରୁ ନାହାନ୍ତି । ଅପର୍ଣ୍ଣାଙ୍କ କୃତି ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ ହେବା ଉଚିତ ।

ପ୍ରାରମ୍ଭରେ କବିତା କଲ୍ପଲତାଙ୍କ ପ୍ରତିକୃତିରେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ମାଲ୍ୟାର୍ପଣ କରାଯାଇଥିଲା । ସାହିତ୍ୟ ସମାଜର ଉପସଭାପତି ଶ୍ରୀ ଶୁକଦେବ ସାହୁ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ଶେଷରେ ସଂଗଠନ ସମ୍ପାଦକ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ ଧନ୍ୟବାଦ ଅର୍ପଣ କରିଥିଲେ ।

# ପ୍ରତିକୃତି ଉନ୍ମୋଚନ-୨

## ତା ୨୧ । ୫ । ୮୭

ଆଜି ସନ୍ଧ୍ୟାରେ ଓଡ଼ିଶାର ପ୍ରାଚୀନ ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଲବ୍ଧପ୍ରତିଷ୍ଠ ଐତିହାସିକ ଓ ଗବେଷକ ସ୍ୱର୍ଗତ ଡଃ ନବୀନକୁମାର ସାହୁଙ୍କର ପ୍ରତିକୃତି ଉନ୍ମୋଚନ କରି ସ୍ୱାଗତିକା ଗାନ ପରେ ଓଡ଼ିଶାର ରାଜ୍ୟପାଳ, ବିଶିଷ୍ଟ ଐତିହାସିକ ଗବେଷକ ଡକ୍ଟର ବିଶ୍ୱମ୍ଭର ନାଥ ପାଣ୍ଡେ କହିଲେ ଯେ, ବିଶ୍ୱବିଦ୍ୟାଳୟମାନଙ୍କରୁ ହଜାର ହଜାର ଇତିହାସ ଛାତ୍ର ଉପାଧି ନେଇ ବାହାରୁଥିଲେ ମଧ୍ୟ ସେମାନଙ୍କ ଭିତରେ ଦେଶର ଇତିହାସ ସମ୍ବନ୍ଧରେ ଗବେଷଣା–ଅନୁସନ୍ଧାନ ମନୋଭାବର ଅଭାବ ପରିଲକ୍ଷିତ ହେଉଛି । ଆଜି ଐତିହାସିକମାନେ ନୂଆ ବିପତ୍ତି ଆଶଙ୍କାରେ ପ୍ରକୃତ ସତ୍ୟର ଅନୁସନ୍ଧାନ କରିବାକୁ କୁଣ୍ଠିତ । ଫଳରେ ଇତିହାସର ଗବେଷଣା ଦ୍ୱାର ବନ୍ଦ ହୋଇଯିବ । ଭାରତର ଇତିହାସର ପ୍ରକୃତ ଅନୁସନ୍ଧାନ ଗବେଷଣା ଆଜିଯାଏ ହୋଇ ନାହିଁ । ଯାହା ହୋଇଛି ସେଥିରେ ଦେଶର ଇତିହାସକୁ ଏକ ହଜାରରୁ ଏକ ହଜାର ପାଞ୍ଚ ଶହ ବର୍ଷ ପଛକୁ ଅଣାଯାଇଛି । ଏ ସମ୍ପର୍କୀୟ କ୍ରନୋଲୋଜି ବା ସମୟ ନିର୍ଦ୍ଧାରଣ ଗଣନା ଠିକ୍ ନୁହେଁ ।

ଡଃ ସାହୁ ଜଣେ ସାଧକ । ଓଡ଼ିଶାର ଐତିହାସିକ ଗବେଷଣା ଲାଗି ସେ ବ୍ରତ ନେଇଥିଲେ ଯେପରି କି ଓଡ଼ିଶାର ମହାନ ସଂସ୍କୃତି ଓ ପରମ୍ପରା ବିଶ୍ୱ ସମ୍ମୁଖରେ ପ୍ରଦର୍ଶିତ ହେବ । ଓଡ଼ିଶାର ଇତିହାସକୁ ସମୃଦ୍ଧ କରିବା ଲାଗି ସେ ନୂତନ ବସ୍ତୁ ଓ ସ୍ଥାନର ସନ୍ଧାନରେ ଘୂରି ବୁଲୁଥିଲେ । ତାଙ୍କ ହୃଦୟର ଭାବନା ଥିଲା, ସତ୍ୟର ଅନୁସନ୍ଧାନ କରିବା ।

ଉତ୍ସବର ମୁଖ୍ୟ ଅତିଥି ବୟୋଜ୍ୟେଷ୍ଠ ସାମ୍ବାଦିକ, ଲୋକସେବକ ମଣ୍ଡଳର ଅଧ୍ୟକ୍ଷ, 'ସମାଜ' ସମ୍ପାଦକ, ପଦ୍ମଭୂଷଣ ଡଃ ରାଧାନାଥ ରଥ କହିଲେ, ବିଶ୍ୱ-ବିଦ୍ୟାଳୟଗୁଡ଼ିକ ପକ୍ଷରୁ ଗବେଷକମାନଙ୍କୁ ଭ୍ରମଣ ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଦିଆଯାଉ ନ ଥିବା କ୍ଷୋଭର କଥା । ସ୍ୱର୍ଗତ ଡକ୍ଟର ସାହୁ ଏ ପ୍ରକାର ସୁବିଧା ସୁଯୋଗ ପାଇଥିଲେ ଆହୁରି ଅନେକ ନୂଆ ତଥ୍ୟ ବାହାର କରିଥାନ୍ତେ । ଦେଶରେ ଯାହା କିଛି ଅଛି ତା'ର ପ୍ରକୃତ ଗବେଷଣା କରାଯାଇ ନାହିଁ । ସେ କହିଲେ ଯେ, ସର୍ବପ୍ରଥମେ ଭାରତୀୟମାନେ ଆମେରିକା ଓ ମେକ୍ସିକୋ ଆବିଷ୍କାର କରିଥିଲେ । ସେଠାରୁ ମିଳିଥିବା ବୌଦ୍ଧମୂର୍ତ୍ତି ପ୍ରଭୃତିରୁ ଏହା ଜଣାଯାଏ ଯେ ସମ୍ରାଟ ଅଶୋକ ପ୍ରଥମେ ସେଠାକୁ ବୌଦ୍ଧ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଯାଇଥିଲେ । ଓଡ଼ିଆ ସୌଦା-ଗରମାନେ ଇଣ୍ଡୋନେସିଆ ପ୍ରଭୃତି ସୁଦୂର ପ୍ରାଚ୍ୟ-ଭୂଖଣ୍ଡ ପ୍ରଥମେ ଆବିଷ୍କାର କରିଥିଲେ । କିନ୍ତୁ ଏବେ କୌଣସି ଗବେଷକ ସେ ସମସ୍ତ ସ୍ଥାନକୁ ଗବେଷଣା ଲାଗି ଯାଉ ନାହାନ୍ତି ।

ସ୍ୱର୍ଗତ ଡଃ ସାହୁଙ୍କୁ ଡଃ ରଥ ଏକ ଅନୁଷ୍ଠାନ ବୋଲି ଅଭିହିତ କରି କହିଲେ ଯେ ଏ ପ୍ରକାର ବହୁମୁଖୀ ପ୍ରତିଭା ଦେଶରେ କ୍ୱଚିତ ଦେଖାଯାଏ । ଡଃ ସାହୁଙ୍କ ଆତ୍ମଜୀବନୀ ଓଡ଼ିଆ ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରକାଶ ନ କଲେ ଗୋପବନ୍ଧୁ ସାହିତ୍ୟ ମନ୍ଦିର ପକ୍ଷରୁ ଏହା ପ୍ରକାଶ କରାଯିବାକୁ ସେ ପ୍ରତିଶ୍ରୁତି ଦେଇଥିଲେ ।

ସମ୍ମାନିତ ପ୍ରଖ୍ୟାତ ଗବେଷକ ଡଃ ସତ୍ୟନାରାୟଣ ରାଜଗୁରୁ କହିଲେ ଯେ ଓଡ଼ିଶାରେ ଯେଉଁ ସବୁ ଐତିହାସିକ ତଥ୍ୟ ରହିଛି, ଗବେଷକମାନେ ସେ ଦିଗରେ ଆଗେଇ ଆସିଲେ ଏବଂ ସେମାନଙ୍କୁ ସେଥିଲାଗି ସୁବିଧା ସୁଯୋଗ ମିଳିଲେ ଓଡ଼ିଶାର ତଥା ଭାରତର ଇତିହାସ ଆହୁରି ଉନ୍ନତ ଅବସ୍ଥାରେ ପହଞ୍ଚିବ । ସ୍ୱର୍ଗତ ଡଃ ସାହୁ ଜଣେ ମହାନ ସତ୍ୟସନ୍ଧାନକାରୀ ବୋଲି ସେ କହିଥିଲେ ।

ସ୍ୱର୍ଗତ ଡଃ ସାହୁଙ୍କର କନିଷ୍ଠ ଭ୍ରାତା ଅଧ୍ୟାପକ ଡଃ ଯଜ୍ଞକୁମାର ସାହୁ ସେମାନଙ୍କ ପାଞ୍ଚ ଭାଇଙ୍କର ବାଲ୍ୟାବସ୍ଥା ଦାରିଦ୍ର୍ୟ ମଧ୍ୟରେ କଟିଛି ଏବଂ ଏପରି କି ନିଜର ଖଣ୍ଡିଏ ଛୋଟ ଗୁଡ଼ିଆ ଦୋକାନରେ ଡଃ ସାହୁଙ୍କ ସମେତ ପାଞ୍ଚ ଭାଇଙ୍କୁ ବରା ପ୍ରଭୃତି ବିକିବାକୁ ପଡ଼ିଥିଲା ବୋଲି ପ୍ରକାଶ କରି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ ।

ଅନ୍ୟତମ ବକ୍ତା ଶ୍ରୀ ମୁରଲିମୋହନ ଜେନା ସ୍ୱର୍ଗତ ଡଃ ସାହୁଙ୍କୁ ସ୍ନେହୀ, ଛାତ୍ରବତ୍ସଳ ଶିକ୍ଷକ ଓ ସତ୍ୟନିଷ୍ଠ ବ୍ୟକ୍ତି ବୋଲି କହିଥିଲେ ।

ଉତ୍ସବରେ ପୌରୋହିତ୍ୟ କରି ଉତ୍କଳ ସାହିତ୍ୟ ସମାଜର ସଭାପତି ଶ୍ରୀ ବିଚିତ୍ରାନନ୍ଦ କର ସ୍ୱର୍ଗତ ଡଃ ସାହୁଙ୍କୁ ଏ ଜାତିର ଶିକ୍ଷକ ବୋଲି ଅଭିହିତ କରି କହିଲେ ଯେ ଐତିହାସିକ ଭ୍ରାନ୍ତି ଦୂର କରି ସତ୍ୟ ପ୍ରତିଷ୍ଠା କରିବା ଇତିହାସକାରର ଧର୍ମ । ଡଃ ସାହୁ ତାହା ହିଁ କରିଛନ୍ତି । ଐତିହାସିକ ଘଟଣାବଳୀ ଜାତି ଓ ସଂସ୍କୃତିର ଇତିହାସ ।

ସାଧାରଣ ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର ପ୍ରାରମ୍ଭିକ ସୂଚନା ଦେଇ ଡଃ ସାହୁଙ୍କୁ ଜଣେ ପ୍ରଚଣ୍ଡ ପ୍ରତିଭାଧର ବ୍ୟକ୍ତି ଓ ମହାନ ସାଧକ ବୋଲି ଦୃଷ୍ଟାନ୍ତ ସହ ବର୍ଣ୍ଣନା କରି ଆଲୋଚନା କରିଥିଲେ ।

ଉପସଭାପତି ଶ୍ରୀ ଶୁକଦେବ ସାହୁ ଭାଷଣ ପ୍ରସଙ୍ଗରେ ଡଃ ସାହୁଙ୍କ ଜୀବନୀ ସମ୍ପର୍କରେ ବହୁ ହୃଦୟସ୍ପର୍ଶୀ ଘଟଣାବଳୀ ବର୍ଣ୍ଣନା କରିଥିଲେ ।

ସଂଗଠନ ସମ୍ପାଦକ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ ଧନ୍ୟବାଦ ଅର୍ପଣ କରିଥିଲେ ।

## ଶୋକସଭା

ତା ୨ । ୨ । ୮୬—ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟା କବିତା-କଳ୍ପଲତା ହରିପ୍ରିୟା ଦେବୀ, ବିଶିଷ୍ଟ ଗବେଷକ ଓ ପ୍ରାବନ୍ଧିକ ଡଃ କ୍ଷେତ୍ରବାସୀ ନାୟକ ଏବଂ ପ୍ରବୀଣ ସାହିତ୍ୟିକ ତଥା ସାମ୍ବାଦିକ ରାଜେନ୍ଦ୍ର ବର୍ମାଙ୍କ ବିୟୋଗରେ ସେମାନଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଅଦ୍ୟ ସନ୍ଧ୍ୟାରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଏକ ଶୋକସଭା ଅନୁଷ୍ଠିତ ହୋଇଥିଲା । ଏଥିରେ ଅନୁଷ୍ଠାନର ସଭାପତି ଶ୍ରୀ ବିଚିତ୍ରାନନ୍ଦ କର ସଭାପତିତ୍ୱ କରିଥିଲେ ।

ସାହିତ୍ୟ ସମାଜର ସମ୍ପାଦିକା ଅଧ୍ୟାପିକା ମନୋରମା ମହାପାତ୍ର ଓଡ଼ିଶାର ୩ ଜଣ ସାହିତ୍ୟିକଙ୍କ ଆତ୍ମା ପ୍ରତି ଶୋକାଞ୍ଜଳି ଅର୍ପଣ କରି କହିଲେ ଯେ କବି ହରିପ୍ରିୟା ଦେବୀ ରକ୍ଷଣଶୀଳ ପରିବାରରେ ପ୍ରତିକୂଳ ପରିବେଶ ମଧ୍ୟରେ ଥାଇ ମଧ୍ୟ ଆଧ୍ୟାତ୍ମିକତା ଓ ଦେଶାତ୍ମବୋଧର ସମନ୍ୱୟରେ ବହୁ ଉଚ୍ଚ-କୋଟୀର କବିତା ରଚନା କରି ଉତ୍ତର ଦାୟାଦମାନଙ୍କୁ ପଥ ଦର୍ଶାଇଛନ୍ତି । ସେହିପରି ଡଃ କ୍ଷେତ୍ରବାସୀ ନାୟକ ଜଣେ ବିଚକ୍ଷଣ ଗବେଷକ ତଥା ପ୍ରାବନ୍ଧିକ ଭାବରେ ଜୀବନର ସ୍ୱଳ୍ପକାଳ ମଧ୍ୟରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରିପାରିଛନ୍ତି । ତାଙ୍କର ଅକାଳ ବିୟୋଗ ହୋଇ ନ ଥିଲେ ସେ

ଗବେଷଣା ସାହିତ୍ୟକୁ ବହୁ ଭାବରେ ସମୃଦ୍ଧ କରି ପାରିଥାନ୍ତେ ଓ ବହୁ ଅବହେଳିତ ପ୍ରତିଭାକୁ ଲୋକଲୋଚନକୁ ଆଣିପାରିଥାନ୍ତେ । ସାମ୍ବାଦିକତା ଓ ସାହିତ୍ୟ ମଧ୍ୟରେ ସମନ୍ୱୟ ସ୍ଥାପନ ଦିଗରେ ପ୍ରବୀଣ ସାହିତ୍ୟିକ ତଥା ସାମ୍ବାଦକ ଗଜେନ୍ଦ୍ର ବର୍ମାଙ୍କ ଅବଦାନ ସାହିତ୍ୟିକମାନଙ୍କ ପାଇଁ ଆଦର୍ଶ ହୋଇ ରହିବ ବୋଲି ସେ ମତ ବ୍ୟକ୍ତ କରିଥିଲେ ।

ଓଡ଼ିଆ ଭାଷାତତ୍ତ୍ୱବିତ୍ ଡଃ ଧନେଶ୍ୱର ମହାପାତ୍ର ଡଃ ନାୟକଙ୍କ ଉଦ୍ଦେଶ୍ୟରେ ଗଭୀର ଶୋକ ପ୍ରକାଶ କରି ବାଲ୍ୟକାଳରୁ ତାଙ୍କର ସାହିତ୍ୟ ପ୍ରତିଭା କିପରି ବିକଶିତ ହୋଇଥିଲା, ସେ ସମ୍ପର୍କରେ ସୂଚନା ଦେଇଥିଲେ । ଅଳ୍ପ ସମୟରେ ହେଉ ବା ପରିଣତ ବୟସରେ ହେଉ ଏପରି ବହୁ ବ୍ୟକ୍ତିଙ୍କ ବିୟୋଗ ଦେଖି ଯେତେ ଶୀଘ୍ର ସମ୍ଭବ ଆମେ ଦେହଧର୍ମଠାରୁ ନିଜକୁ ପୃଥକ୍ କରିବା ଉଚିତ ବୋଲି ସେ କହିଥିଲେ ।

କବିତା କଳ୍ପଲତା ହରିପ୍ରିୟା ଦେବୀ ଜାତୀୟ ଜୀବନ ସ୍ରୋତରେ ନିଜକୁ ମିଶାଇ ଦେଇ ଓଡ଼ିଶୀ ସଙ୍ଗୀତ ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରିବା ପାଇଁ ଯେଉଁ ସଂଗ୍ରାମ କରିଥିଲେ, ତାହା ସାହିତ୍ୟିକମାନଙ୍କୁ ପ୍ରେରଣା ଦେବ ବୋଲି ଶ୍ରୀ ପରମାନନ୍ଦ ଅଧିକାରୀ ମତବ୍ୟକ୍ତ କରିଥିଲେ ।

କବି ମୁରାରିମୋହନ ଜେନା ସାମ୍ବାଦିକ ଗଜେନ୍ଦ୍ର ବାବୁଙ୍କ ସ୍ମୃତିଚାରଣ କରି ସ୍ୱାଧୀନତା ଆନ୍ଦୋଳନ ଓ ସାହିତ୍ୟ କ୍ଷେତ୍ରରେ ତାଙ୍କ ଭୂମିକା ସମ୍ପର୍କରେ ଆଲୋକପାତ କରିଥିଲେ ।

ସଂଗଠନ ସମ୍ପାଦକ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ କହିଲେ ଯେ ଡଃ ନାୟକ ଓଡ଼ିଆ ସାହିତ୍ୟରେ ଜଣେ ଅଜାତଶତ୍ରୁ ଥିଲେ । ସ୍ୱର୍ଗତା ହରିପ୍ରିୟା ଦେବୀ ସ୍ନେହପ୍ରବଣା ଓ ଗଜେନ୍ଦ୍ରବାବୁ ଜଣେ ପିତୃପ୍ରତିମ ସାହିତ୍ୟ ସାଧକ ଥିଲେ ।

ସଭାପତି ଶ୍ରୀ କର କହିଲେ ଯେ ଚଳିତ ବର୍ଷର ପ୍ରାରମ୍ଭରେ ଓଡ଼ିଆ ସାହିତ୍ୟାକାଶରୁ ୩ଟି ଉଜ୍ଜ୍ୱଳ ନକ୍ଷତ୍ର ଅସ୍ତମିତ ହୋଇଯାଇଛନ୍ତି । ଗବେଷଣା କ୍ଷେତ୍ରରେ ଡଃ ନାୟକ, କବିତା ରଚନାରେ ହରିପ୍ରିୟା ଦେବୀ ଓ ସାହିତ୍ୟ ଏବଂ ସାମ୍ବାଦିକତା ସୃଷ୍ଟି ଦିଗରେ ଗଜେନ୍ଦ୍ର ବର୍ମାଙ୍କ କୃତି ଚିର ଅମଳିନ ହୋଇ ରହିବ ।

ଉତ୍କଳକବି ମଧୁସୂଦନ ରାଓଙ୍କ ଜନ୍ମଦିବସ ଉପଲକ୍ଷ ଅନୁଷ୍ଠାନର ସମ୍ପାଦିକା ଓ ସଭାପତି ପ୍ରାରମ୍ଭରେ ତାଙ୍କ ପ୍ରତିକୃତିରେ ଫୁଲମାଳ ଦେଇ ତାଙ୍କ ସ୍ମୃତିଚାରଣ କରିଥିଲେ ।

ପରଲୋକଗତ ଅମର ଆତ୍ମାମାନଙ୍କ ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କ ନିକଟକୁ ଶୋକବାର୍ତ୍ତା ପ୍ରେରଣ କରାଯାଇଥିଲା ।

# ସ୍ୱର୍ଗତା ସରଳା ଦେବୀ

ତା ୭ । ୧୦ । ୮୬—ବିଶିଷ୍ଟ ନାରୀନେତ୍ରୀ, ସାହିତ୍ୟିକା, ଦେଶସେବୀ ନାରୀ–ସ୍ୱାଧୀନତାର ବାର୍ତ୍ତାବହ ତଥା ଅଗ୍ରଦୂତ ଶ୍ରୀମତୀ ସରଳା ଦେବୀଙ୍କର ବିୟୋଗରେ ଏକ ଶୋକସଭା ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଅଦ୍ୟ ସନ୍ଧ୍ୟାରେ ଅନୁଷ୍ଠିତ ହୋଇଥିଲା । ଅନୁଷ୍ଠାନର ସଭାପତି ଶ୍ରୀ ବିଚିତ୍ରାନନ୍ଦ କର ଅଧ୍ୟକ୍ଷତା କରିଥିଲେ । ଓଡ଼ିଶାର ବହୁ ଅନୁଷ୍ଠାନ ପକ୍ଷରୁ ପ୍ରତିକୃତିରେ ପୁଷ୍ପମାଲ୍ୟ ଅର୍ପଣ କରାଯାଇଥିଲା । ବାବାଜୀ ଅଦ୍ୱୈତଚରଣ ଦାସ ଗୀତା ପାଠ କରିଥିଲେ ।

ଉତ୍କଳ ସାହିତ୍ୟ ସମାଜର ସମ୍ପାଦିକା ଅଧ୍ୟାପିକା ଶ୍ରୀମତୀ ମନୋରମା ମହାପାତ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହିଲେ ଯେ ସରଳା ଦେବୀ ଏକାଧାରରେ ଆଧ୍ୟାତ୍ମିକ, ରାଜନୈତିକ, ଅର୍ଥନୈତିକ, ବୈଜ୍ଞାନିକ, ତଥା ସାଂସ୍କୃତିକ ଚେତନାକୁ ତାଙ୍କର ବଳିଷ୍ଠ ଲେଖନୀ ମୁନରେ ରୂପ ଦେଇ ସମାଜ ସଂସ୍କାର ଓ ନାରୀ ଜାତିର ଅଗ୍ରଗତି ପାଇଁ ପଥ ନିର୍ଦ୍ଦେଶ କରିଥିଲେ । ଉତ୍କଳ ସାହିତ୍ୟ ସମାଜର ସମ୍ପାଦିକା ଭାବରେ ସରଳା ଦେବୀଙ୍କ ଉଲ୍ଲେଖନୀୟ ଅବଦାନ ସମ୍ପର୍କରେ ବହୁ ଦୃଷ୍ଟାନ୍ତ ଦେଇ ସେ କହିଲେ ଯେ ତାଙ୍କର ଅବଦାନ ଅବିସ୍ମରଣୀୟ ।

ଉତ୍କଳ ସାହିତ୍ୟ ସମାଜର ପୂର୍ବତନ ସଭାପତି ବିଶିଷ୍ଟ କବି ଶ୍ରୀ ଅନନ୍ତ ପଟ୍ଟନାୟକ ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହିଲେ ଯେ ସରଳା ଦେବୀ ସ୍ୱାଧୀନତା ଆନ୍ଦୋଳନ, ଦେଶମିଶ୍ରଣ ଆନ୍ଦୋଳନ ଏବଂ ସାହିତ୍ୟ ସାଧନା ସବୁ କ୍ଷେତ୍ରରେ ଅଗ୍ରଗାମୀ ଥିଲେ । ତାଙ୍କର ବିପ୍ଳବିନୀ ଜୀବନ ସମ୍ପର୍କରେ ପୂର୍ଣ୍ଣାଙ୍ଗ ବିବରଣୀ ପ୍ରକାଶିତ ହେବା ଉଚିତ ।

ବିଶିଷ୍ଟ ସର୍ବୋଦୟ ନେତା ଶ୍ରୀ ମନମୋହନ ଚୌଧୁରୀ ସରଳା ଦେବୀଙ୍କ ସହିତ ତାଙ୍କ ପାରିବାରିକ ଘନିଷ୍ଠତା ସମ୍ପର୍କରେ ଉଲ୍ଲେଖ କରି କହିଲେ ଯେ ମହାତ୍ମା ଗାନ୍ଧିଙ୍କ ପ୍ରେରଣାରେ ସେ ଓଡ଼ିଶାରେ ନାରୀ ଜାଗରଣ ଆଣିବାରେ ଅଗ୍ରଣୀ ଥିଲେ । ତାଙ୍କର ସାହସ ଓ ନିର୍ଭୀକତା ବିରଳ ।

ଓଡ଼ିଶା ନାରୀସେବା ସଂଘ ସଭାନେତ୍ରୀ ଡାକ୍ତର ଜ୍ୟୋତ୍ସ୍ନା ଦେଇ କହିଲେ ଯେ ସରଳା ଦେବୀଙ୍କ ସହ ମିଶିଲେ ଝିଅ ପିଲମାନେ ଖରାପ ହୋଇଯିବେ ଭାବି ଆମକୁ ତାଙ୍କ ସହ ମିଶିବାକୁ ଦେଉ ନ ଥିଲେ ।

ବିଶିଷ୍ଟ ଶ୍ରମିକ ନେତା ଆଡ୍‌ଭୋକେଟ ଶ୍ରୀ ରାମଚନ୍ଦ୍ର ରାମ କହିଲେ ଯେ ସରଳା ଦେବୀଙ୍କ ସମଗ୍ର ପରିବାର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଜେଲ ଭିତରେ ସେ ତାଙ୍କର ଏକମାତ୍ର ପୁତ୍ର ସନ୍ତାନକୁ ପ୍ରସବ କରିଥିଲେ । ଯାହାକି ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏକ ବିଶେଷ ଘଟଣା ।

ବିଶିଷ୍ଟ ଶିକ୍ଷାବିତ୍ ଡଃ ଶ୍ରୀରାମଚନ୍ଦ୍ର ଦାଶ କହିଲେ ଯେ ଶ୍ରୀମତୀ ସରଳା ଦେବୀ ନିଜ ମହିମା ବଳରେ ନିଜକୁ ନିଜେ ସୁପ୍ରତିଷ୍ଠିତ କରିପାରିଥିଲେ । ତାଙ୍କର ସାହିତ୍ୟ ସଂଗଠନ ଶକ୍ତି ଅଭୁତ ଥିଲା । ସେ ଜଣେ ଆତ୍ମମର୍ଯ୍ୟାଦାସମ୍ପନ୍ନ ନାରୀ ଥିଲେ । ସେ ସର୍ବବିଧ କୁସଂସ୍କାରର ଊର୍ଦ୍ଧ୍ୱରେ ଥିଲେ । ସେ ଥିଲେ ଓଡ଼ିଶାରେ ନାରୀ ସ୍ୱାଧୀନତାର ଉଦ୍‌ଗାତା ଓ ଅଗ୍ରଦୂତ ।

ସର୍ବୋଦୟ ନେତ୍ରୀ ଶ୍ରୀମତୀ ରମା ଦେବୀ କହିଲେ ଯେ ଓଡ଼ିଶାରେ ମୋର ପ୍ରତିଷ୍ଠାରେ ସରଳାଦେବୀଙ୍କ ଅବଦାନ ଅବିସ୍ମରଣୀୟ ।

ଶ୍ରମିକ ନେତା ଶ୍ରୀ ବିଶ୍ୱନାଥ ପଣ୍ଡିତ କହିଲେ ଯେ ଓଡ଼ିଶାର ପ୍ରଥମ ନାରୀ ଜାଗରଣ କର୍ମୀଙ୍କ ଶବ ଶୋଭଯାତ୍ରାରେ ମାତ୍ର ୨୦ ଜଣ ଲୋକ ଯିବା ଅତି ଦୁଃଖଦାୟକ । ତାଙ୍କର ସତ୍ୟାଗ୍ରହ, ନିର୍ଭୀକତା ଓ ସ୍ପଷ୍ଟବାଦିତା ପିଲାବେଳୁ ଆମକୁ ସ୍ୱାଧୀନତା ଆନ୍ଦୋଳନ ପାଇଁ ପ୍ରେରଣା ଦେଇଥିଲା ।

ସର୍ବୋଦୟ ନେତ୍ରୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା କହିଲେ ଯେ 'ସରଳା ଦେବୀ' ଏହି ନାମଟି ଯେତେବେଳେ ପ୍ରସିଦ୍ଧ ହୋଇ ଯାଇଥିଲା, ଝିଅକୁ ଆକଟ କରିବାକୁ ହେଲେ ମା'ମାନେ କହୁଥିଲେ 'ତୁ ତ ସରଳା ଦେବୀ ହୋଇଗଲୁ ।'

କବି ଶ୍ରୀ ମୁରାରିମୋହନ ଜେନା କହିଲେ ଯେ ତାଙ୍କର ସବୁଠୁ ବଡ଼ଗୁଣ ଥିଲା ମୁକାବିଲା କରିବା । ସମଗ୍ର ଓଡ଼ିଆ ଜାତି ପାଇଁ ସେ ଥିଲେ ଏକ ପ୍ରେରଣାର ଉତ୍ସ ।

ସାହିତ୍ୟିକ ଶ୍ରୀ ଲକ୍ଷ୍ମୀଧର ନାୟକ ସ୍ମୃତିଚାରଣ କରି କହିଲେ ଯେ ସରଳା ଦେବୀ ସାଧାରଣ ଜୀବନକୁ ଓହ୍ଲାଇ ଆସିବା ଫଳରେ ବହୁ କଟୁ ମନ୍ତବ୍ୟ ଓ ଅପବାଦର ଶିକାର ହୋଇଥିଲେ । ସେ 'ସରଳା ଅପା' ଶୀର୍ଷକ ଏକ ସ୍ୱରଚିତ କବିତା ଆବୃତ୍ତି କରିଥିଲେ ।

ସଭାପତି ଶ୍ରୀ କର କହିଲେ ଯେ ବିଧାୟକ ଭାବେ ବିଧାନସଭାରେ ତାଙ୍କର ବକ୍ତୃତା ସବୁ ଲିପିବଦ୍ଧ କରାଯାଇ ପ୍ରକାଶ କରାଗଲେ ଏବକାର ବିଧାୟକମାନେ ସେ ଦିଗରୁ ଯଥେଷ୍ଟ ପ୍ରେରଣା ପାଆନ୍ତେ । ସେ ସରଳା ଦେବୀଙ୍କ ସାରସ୍ୱତ ସାଧନାର ଭୂରି ଭୂରି ପ୍ରଶଂସା କରିଥିଲେ । ସଭାରେ ଅନ୍ୟମାନଙ୍କ ମଧ୍ୟରେ ଅଧ୍ୟକ୍ଷା ଶ୍ରୀମତୀ ନୀଳିମା ମିଶ୍ର, ଶ୍ରୀମତୀ ନୀରଦପ୍ରଭା ପଟ୍ଟନାୟକ, ଶ୍ରୀମତୀ ବିଜୟଲକ୍ଷ୍ମୀ ସାହୁ ଏବଂ ଶ୍ରୀମତୀ ସରଳା ମହାପାତ୍ର ପ୍ରମୁଖ ଭାଷଣ ଦେଇଥିଲେ ।

ତାଙ୍କର ଅପ୍ରକାଶିତ ସାହିତ୍ୟକୃତିଗୁଡ଼ିକର ପ୍ରକାଶନ ପାଇଁ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ସମସ୍ତଙ୍କର ସହଯୋଗ କାମନା କରାଯାଇଥିଲା । ଏହି କାମନା ପାଇଁ ଗଙ୍ଗାବେନ ଟ୍ରଷ୍ଟ ପକ୍ଷରୁ ୫ ଶହ ଟଙ୍କା, ଡାକ୍ତର ଦେଇ ଭଉଣୀଙ୍କ

ପକ୍ଷରୁ ୫ ଶହ ଟଙ୍କା, ଶ୍ରୀମତୀ ରମ୍ଭା ଦେବୀ ଏବଂ ଶ୍ରୀମତୀ ପ୍ରଭା ପଟେଲ ୧୦୧ ଟଙ୍କା ଲେଖା ଦାନ ଘୋଷଣା କରିଥିଲେ ।

ଶେଷରେ ସଂଗଠନ ସମ୍ପାଦକ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ ଶୋକ ପ୍ରସ୍ତାବ ଆଗତ କରିଥିଲେ ।

'ଉତ୍କଳ ପ୍ରକାଶକ ସଂଘ' ପକ୍ଷରୁ ଶ୍ରୀ ଶୁକଦେବ ସାହୁ, 'ଉତ୍କଳ ମହିଳା ସମିତି' ପକ୍ଷରୁ ଶ୍ରୀମତୀ ନୀରଦପ୍ରଭା ପଟ୍ଟନାୟକ, 'ପ୍ରତିବେଶୀ' ପକ୍ଷରୁ କବି ଅମରେଶ ପଟ୍ଟନାୟକ, 'ସ୍ୱାଧୀନତା ସଂଗଠନ' ପକ୍ଷରୁ ଶ୍ରୀ ଫକୀରମୋହନ ଶତପଥୀ, 'ସର୍ବୋଦୟ ଅନୁଷ୍ଠାନ'ଗୁଡ଼ିକ ପକ୍ଷରୁ ଶ୍ରୀ ମନମୋହନ ଚୌଧୁରୀ, 'ପୂଜ୍ୟପୂଜା ସଂସଦ' ପକ୍ଷରୁ ଶ୍ରୀ ପରମାନନ୍ଦ ଅଧିକାରୀ, 'ପ୍ରତିଭା ପୂଜା ପରିଷଦ' ପକ୍ଷରୁ ଶ୍ରୀ ମୁରାରିମୋହନ ଜେନା, 'ଇଉନିଭର୍ସ' ପକ୍ଷରୁ ଶ୍ରୀ ଗିରିଜାଭୂଷଣ ପଟ୍ଟନାୟକ, 'ସ୍ୱରାଜ ଆଶ୍ରମ' ପକ୍ଷରୁ ଶ୍ରୀ ଶ୍ରୀକାନ୍ତ ପଣ୍ଡା ଓ ଶ୍ରୀ ସଂଗ୍ରାମକେଶରୀ ମହାପାତ୍ର 'ନୀଳଶୈଳ' ପକ୍ଷରୁ ଶ୍ରୀ ରାଜକିଶୋର ରାଜ, 'ମହିଳା କଂଗ୍ରେସ' ପକ୍ଷରୁ ଶ୍ରୀମତୀ ପ୍ରଭା ପଟେଲ, 'ଲାୟନେସ' ପକ୍ଷରୁ ଶ୍ରୀମତୀ ସୁଦୀପ୍ତା ଦାଶ, ସାମ୍ବାଦିକଙ୍କ ପକ୍ଷରୁ ଶ୍ରୀ ଅରୁଣ ପଣ୍ଡା, 'କର୍ମଜୀବୀ ମହିଳା ନିବାସ' ପକ୍ଷରୁ ଶ୍ରୀମତୀ ବାସନ୍ତୀ ସାହୁ, 'ଶିଶୁ ସାହିତ୍ୟିକ ସଂଗଠନ' ପକ୍ଷରୁ ଶ୍ରୀ କ୍ଷୀରୋଦଚନ୍ଦ୍ର ପୋଥାଲ, 'ସରସ ସାହିତ୍ୟ ସମିତି' ପକ୍ଷରୁ ଡଃ ଶ୍ୟାମସୁନ୍ଦର ମିଶ୍ର, ହରିଦାସପୁର ସେବାସମିତି ପକ୍ଷରୁ ଶ୍ରୀମତୀ ରମ୍ଭା ଦେବୀ ପ୍ରମୁଖ ସରଳା ଦେବୀଙ୍କ ପ୍ରତିକୃତିରେ ମାଲ୍ୟାର୍ପଣ କରିଥିଲେ ।

## ସ୍ୱର୍ଗତ ଡଃ ହରେକୃଷ୍ଣ ମହତାବ

ଉତ୍କଳ ସାହିତ୍ୟ ସମାଜର ବରେଣ୍ୟ ସଭ୍ୟ, ପ୍ରଖ୍ୟାତ ଐତିହାସିକ, ସାମ୍ବାଦିକ, ଜନନାୟକ ଓ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବଙ୍କର ତିରୋଧାନରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ତାଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ ଜାନୁୟାରୀ ମାସ ୭ ତାରିଖ ସନ୍ଧ୍ୟାରେ ଶ୍ରୀରାମଚନ୍ଦ୍ର ଭବନରେ ଏକ ଭାବଗମ୍ଭୀର ପରିବେଶରେ ଏକ ଶୋକସଭା ଅନୁଷ୍ଠିତ ହୋଇଥିଲା । ଏଥିରେ ସଭାପତି ଶ୍ରୀ ବିଚିତ୍ରାନନ୍ଦ କର ଅଧ୍ୟକ୍ଷତା କରିଥିଲେ । ପ୍ରାରମ୍ଭିକ ସୂଚନା ଦେଇ ସାହିତ୍ୟ ସମାଜର ସଂଗଠନ ସମ୍ପାଦକ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ କହିଲେ ଯେ ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁଙ୍କ ପରେ ଉତ୍କଳ କେଶରୀ ଡଃ ମହତାବଙ୍କ ସ୍ଥାନ ଓଡ଼ିଆମାନଙ୍କ ହୃଦୟରେ ଚିର ଜାଜ୍ୱଲ୍ୟମାନ ହୋଇ ରହିବ ।

ଜଷ୍ଟିସ ଶ୍ରୀ ହରିହର ମହାପାତ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହିଲେ ଯେ ଡଃ ମହତାବ ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ । ପ୍ରଶାସନିକ କ୍ଷେତ୍ରରେ ସେ ଉଲ୍ଲେଖନୀୟ ସଫଳତା ହାସଲ କରିଥିଲେ ମଧ୍ୟ ସାହିତ୍ୟ କ୍ଷେତ୍ରରେ ତାଙ୍କର ସର୍ବଶ୍ରେଷ୍ଠ ଦକ୍ଷତା ପ୍ରତିପାଦିତ ହୋଇଛି । ସେ ଯେଉଁ କାର୍ଯ୍ୟରେ ହାତ ଦେଉଥିଲେ ତାକୁ ଶେଷ ନ କରି ଛାଡ଼ୁ ନ ଥିଲେ ।

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ କହିଲେ ଯେ ତାଙ୍କ ଆଦର୍ଶ ଓ ପ୍ରେରଣାରେ ବହୁ ସାହିତ୍ୟରଥୀ ସୃଷ୍ଟି ହୋଇଛନ୍ତି ।

କବି ଶ୍ରୀ ଅନନ୍ତ ପଟ୍ଟନାୟକ କହିଲେ ବାମପନ୍ଥୀ ହେଉ ବା ଦକ୍ଷିଣପନ୍ଥୀ ହେଉ ତାଙ୍କ ମଧ୍ୟରେ ଥିବା ଆଦର୍ଶକୁ ସେ ସମ୍ମାନ ଦେଉଥିଲେ ।

ଜଷ୍ଟିସ ନବକୁମାର ଦାସ କହିଲେ ଯେ ଡଃ ମହତାବଙ୍କଠାରେ ଏକାଧାରରେ ଦୂରଦର୍ଶିତା, ଆତ୍ମବିଶ୍ୱାସ, କର୍ମନିଷ୍ଠ ଓ ପ୍ରଗତିଶୀଳତାର ସମନ୍ୱୟ ଘଟିଥିଲା ।

ଶ୍ରୀ ମନମୋହନ ମିଶ୍ର କହିଲେ, ସେ ସ୍ୱପ୍ନବିଳାସୀ ନ ଥିଲେ ବରଂ ବାସ୍ତବବାଦୀ ଥିଲେ ।

ଡଃ ଗଙ୍ଗାଧର ବଳ କହିଲେ, ମହତାବଙ୍କ ବିଚକ୍ଷଣ ବ୍ୟକ୍ତିତ୍ୱ ସବୁ ଶ୍ରେଣୀର ଲୋକଙ୍କୁ ମୁଗ୍ଧ କରିଥିଲା ।

ଶ୍ରୀ ରବିନାରାୟଣ ମହାପାତ୍ର କହିଲେ, ତାଙ୍କ ବିରୋଧୀ ଲୋକେ ମଧ୍ୟ ତାଙ୍କଠାରୁ ବିପଦ ସମୟରେ ପରାମର୍ଶ ନିଅନ୍ତି । ଏହା ହିଁ ତାଙ୍କର ବୈଶିଷ୍ଟ୍ୟ ।

କବି ମୁରାରି ଜେନା କହିଲେ, କବିତା ପାଠୋତ୍ସବରେ କବିମାନେ ନିଜ ନିଜର କବିତା ପଢ଼ି ଗ୍ଲିଯାଆନ୍ତି । ମାତ୍ର ବିଷୁବ ମିଳନ କବିତା ପାଠୋତ୍ସବରେ ମହତାବ ନିଜେ କବିତା ପଢ଼ନ୍ତି ଓ ଶେଷଯାଏ ବସି ରହି ସବୁ କବିତା ଶୁଣନ୍ତି ।

ଶ୍ରୀ ଶୁକଦେବ ସାହୁ ଡଃ ମହତାବଙ୍କ ସାହିତ୍ୟିକ ପ୍ରତିଭା ସମ୍ପର୍କରେ ଆଲୋଚନା କରି ଶ୍ରଦ୍ଧାଞ୍ଜଳି ଜଣାଇଥିଲେ ।

ଆକାଶବାଣୀର ଡକ୍ଟର ବ୍ରଜମୋହନ ମହାନ୍ତି, ଶ୍ରୀ ନଦିୟାବିହାରୀ ମହାନ୍ତି ଓ ଶ୍ରୀ ଦୀନବନ୍ଧୁ ଦାସ ପ୍ରମୁଖ କହିଲେ ଯେ କଟକରେ ଆକାଶବାଣୀ ପ୍ରତିଷ୍ଠା ଦିଗରେ ଡଃ ମହତାବଙ୍କ ଅବଦାନ ଅବିସ୍ମରଣୀୟ ।

ଡଃ ବିଚିତ୍ରାନନ୍ଦ ମହାନ୍ତି କହିଲେ, ସେ ମୋର ଗୁରୁଦେବ ଥିଲେ । ଫାସିଗନ୍ଧ ଛଦ୍ମନାମରେ ସେ 'ପ୍ରଜାତନ୍ତ୍ର'ରେ ବହୁ ପୂର୍ବରୁ ହାସ୍ୟରସାତ୍ମକ ଲେଖା ଲେଖୁଥିଲେ । ସେ ବିଷୟରେ ଗବେଷଣା ହେବା ଉଚିତ ।

ପ୍ରକାଶକ ପୀତାମ୍ବର ମିଶ୍ର କହିଲେ, ତାଙ୍କର ଶେଷ ପୁସ୍ତକ "While Serving My Nation" ମୁଁ ପ୍ରକାଶ କରିଥିଲି । ଏହି ପୁସ୍ତକଟିକୁ ଶୀଘ୍ର ପ୍ରକାଶ କରି ଦିଲ୍ଲୀରେ ଉନ୍ମୋଚନ କରିବା ଲାଗି ସେ କାହିଁକି ବ୍ୟଗ୍ର ହୋଇଥିଲେ, ତାଙ୍କର ବିୟୋଗ ପରେ ମୁଁ ସେ କଥା ବୁଝିପାରୁଛି । ଅନ୍ୟମାନଙ୍କ ମଧ୍ୟରେ ସର୍ବଶ୍ରୀ ସତ୍ୟପ୍ରିୟ ମହାପାତ୍ର, ସଂଗ୍ରାମକେଶରୀ ମହାପାତ୍ର, ନଗେନ ବେଉରିଆ, ବରଦାପ୍ରସନ୍ନ ପଟ୍ଟନାୟକ, ଲଳିତକୁମାର ଘୋଷ ପ୍ରମୁଖ ଡଃ ମହତାବଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ସଭାପତି ଶ୍ରୀ କର ମହତାବଙ୍କୁ ପ୍ରତିଭାର ପାହାଡ଼ ରୂପେ ବର୍ଣ୍ଣନା କରିଥିଲେ । ଜେନାମଣି ଲକ୍ଷ୍ମୀକାନ୍ତ, ମୁରଲି-ମୋହନ ଜେନା ଓ କୁମାରୀ ବନଜ୍ୟୋତ୍ସ୍ନା ମହତାବଙ୍କ ଉଦ୍ଦେଶ୍ୟରେ ସ୍ୱରଚିତ କବିତା ପାଠ କରିଥିଲେ ।

## ଶୋକ ପ୍ରସ୍ତାବ

ଆଲୋଚ୍ୟ ସମୟ ମଧ୍ୟରେ ଓଡ଼ିଶା ବିଧାନସଭାର ପୂର୍ବତନ ବାଚସ୍ପତି ତଥା ପ୍ରାବନ୍ଧିକ ନନ୍ଦକିଶୋର ଦାସ, ସମ୍ବଲପୁରର ବିଶିଷ୍ଟ ବ୍ୟଙ୍ଗଲେଖକ, ଆଡ୍‌ଭୋକେଟ ସୁନୀଲ ମିଶ୍ର, ଗବେଷକ ଡଃ କ୍ଷେତ୍ରବାସୀ ନାୟକ, କବି ଶ୍ରୀ ବସନ୍ତ ମୁଦୁଲି, ନରସିଂହପୁର ରାଜମାତା କବି କନକମଞ୍ଜରୀ ଦେବୀ,ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଦସ୍ୟ ଚିନ୍ତାମଣି ପତି, କେନ୍ଦୁଝରର ବିଭୁପ୍ରେମୀ କବି ବିଦ୍ୟାଧର ରାଉତରାୟ ଓ ସବୁଜ ଯୁଗର ଅନ୍ୟତମ ସାହିତ୍ୟରଥୀ ଶରତଚନ୍ଦ୍ର ମୁଖାର୍ଜିଙ୍କର ବିୟୋଗରେ ଉତ୍କଳ ସାହିତ୍ୟ ସମାଜ କାର୍ଯ୍ୟନିର୍ବାହିକା ସମିତିରେ ଶୋକ ପ୍ରସ୍ତାବ ଗ୍ରହଣ କରାଯାଇ ଦୁଇ ମିନିଟ ଲେଖାଏଁ ନୀରବ ପ୍ରାର୍ଥନା କରାଯାଇଥିଲା ଓ ସେମାନଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କ ଦୁଃଖରେ ସମବେଦନା ଜ୍ଞାପନ କରାଯାଇଥିଲା ।

## ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ପ୍ରଖ୍ୟାତ ଐତିହାସିକ, ସ୍ୱନାମଧନ୍ୟ ପ୍ରତ୍ନତତ୍ତ୍ୱବିତ୍, ପ୍ରସିଦ୍ଧ ଗବେଷକ ତଥା ପ୍ରବୀଣ ସାହିତ୍ୟିକ ପଦ୍ମଶ୍ରୀ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ବିୟୋଗରେ ଗତ ତା ୬-୩-୯୭ ରିଖ ସନ୍ଧ୍ୟାରେ ଶ୍ରୀରାମଚନ୍ଦ୍ର ଭବନରେ ଏକ ଶୋକସଭା ଅନୁଷ୍ଠିତ ହୋଇଥିଲା । ପ୍ରାରମ୍ଭରେ ସ୍ୱର୍ଗତ ଆତ୍ମାର ସଦ୍‌ଗତି ନିମନ୍ତେ ଦୁଇ ମିନିଟ ନୀରବ ପ୍ରାର୍ଥନା କରାଯାଇଥିଲା ।

ଉତ୍କଳ ସାହିତ୍ୟ ସମାଜର ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହିଲେ ଯେ ଡକ୍ଟର ପାଣିଗ୍ରାହୀଙ୍କର ଧୀମତା, ସତ୍ୟନିଷ୍ଠ

ଓ ନିରଳସ ଗବେଷଣା ତଥା ଉଚ୍ଚକୋଟୀର ରଚନାବଳୀ ପୃଥିବୀର ବହୁ ଜ୍ଞାନୀ ଓ ବିଦେଶାଗତ ପ୍ରତ୍ନତତ୍ତ୍ୱବିଦ୍‌ଙ୍କୁ ଚମତ୍କୃତ କରି ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠିତ କରାଇଥିଲା । ସେ ଥିଲେ ଯଥାର୍ଥ ମଣିଷ ପରି ମଣିଷ ଓ ସତ୍ୟାନୁସନ୍ଧାନୀ ଶ୍ରେଷ୍ଠ ସାଧକ ।

ଲୋକରତ୍ନ ଡଃ କୃଷ୍ଣବିହାରୀ ଦାଶ କହିଲେ ଯେ ଡକ୍‌ଟର ପାଣିଗ୍ରାହୀ ଆଦିକବି ସାରଳାଦାସଙ୍କୁ ଐତିହାସିକ ପୁରୁଷ ଭାବେ ପ୍ରମାଣ କରିଥିଲେ । ତାଙ୍କ ରଚିତ ଏହି ପୁସ୍ତକ ଭାରତର ସବୁ ଭାଷାରେ ଅନୂଦିତ ତଥା ଉଚ୍ଚ ପ୍ରଶଂସିତ ହୋଇଥିଲା ।

ଅବସରପ୍ରାପ୍ତ ଅସ୍ଥାୟୀ କୁଳପତି ଡକ୍‌ଟର ହରିହର ପଟ୍ଟନାୟକ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଡଃ ପାଣିଗ୍ରାହୀ କିପରି ଛାତ୍ରବତ୍ସଳ ଥିଲେ ଓ ବ୍ରହ୍ମପୁରର ତତ୍କାଳୀନ ଉଚ୍ଛୃଙ୍ଖଳ ଛାତ୍ରଛାତ୍ରୀମାନଙ୍କୁ କିପରି ଅତି ସହଜ ଭାବରେ ଭଲ ବାଟକୁ ଆଣି ପାରିଥିଲେ, ତାର ସୂଚନା ଦେଇଥିଲେ ।

ଉପସଭାପତି ଶ୍ରୀ ଶୁକଦେବ ସାହୁ କହିଲେ, ଗବେଷକ ଡଃ ପାଣଗ୍ରାହୀଙ୍କର 'ମୋ ସମୟର ଓଡ଼ିଶା' ଅମର କୃତି ।

ଶ୍ରୀ ରବିନାରାୟଣ ମହାପାତ୍ର କହିଲେ ଯେ ସେତେବେଳର ଓଡ଼ିଶାରେ ଯେଉଁ ଶୃଙ୍ଖଳା ଓ ପରିବେଶରେ ଗଡ଼ଜାତମାନଙ୍କରେ ସାଂସ୍କୃତିକ ବାତାବରଣ ଗଢ଼ି ଉଠିଥିଲା, ତାର ଜ୍ୱଳନ୍ତ ନିଦର୍ଶନ ହେଉଛନ୍ତି ଡକ୍‌ଟର ପାଣିଗ୍ରାହୀ । ତେଣୁ ତାଙ୍କଠାରେ ଖାଣ୍ଟି ଓଡ଼ିଆତ୍ୱର ସ୍ୱାଭିମାନ ଫୁଟି ଉଠିଥିଲା ।

ଅଧ୍ୟାପକ ଦୀପକ ଷଡ଼ଙ୍ଗୀ କହିଲେ, ଡଃ ପାଣିଗ୍ରାହୀ ଆଦିବାସୀ ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ ଏବଂ ଉପାନ୍ତ ଅଞ୍ଚଳରେ ବୈବାହିକ ସମ୍ପର୍କ ସ୍ଥାପନ କରିଥିଲେ । ବିଚ୍ଛିନ୍ନାଞ୍ଚଳ ଓଡ଼ିଆ ଜନଜୀବନ ସହିତ ସେ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । ଇତିହାସ ସତ୍ୟ ଉପରେ ପ୍ରତିଷ୍ଠିତ — ଏହା ସେ ଆଜୀବନ ପ୍ରମାଣ କରି ଜୀବନରେ ଅନୁସରଣ କରିଛନ୍ତି ।

ଶ୍ରୀ ଭବପ୍ରସାଦ ମହାପାତ୍ର କହିଲେ, ବିଜ୍ଞାନସମ୍ମତ ଇତିହାସ ସୃଷ୍ଟିରେ ଡଃ ପାଣଗ୍ରାହୀ ଅଦ୍ୱିତୀୟ । ଉତ୍କଳ ସାହିତ୍ୟ ସମାଜର ସଂଗଠନ ସମ୍ପାଦକ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ ଶୋକପ୍ରସ୍ତାବ ଆଗତ କଲାବେଳେ ଡଃ ପାଣିଗ୍ରାହୀଙ୍କର ଗବେଷଣାତ୍ମକ ଅନୁଶୀଳନର ଗୋଟିଏ ଦୁଇଟି ସୂଚନା ଦେଇ ତାଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ .

ସଭାପତି ଶ୍ରୀ ବିଚିତ୍ରାନନ୍ଦ କର ତାଙ୍କ ଅଭିଭାଷଣରେ କହିଲେ, କସ୍ତୁରୀ ମୃଗର ସୁଗନ୍ଧରେ ଚତୁର୍ଦ୍ଦିଗ ମହକିଲା ଭଳି ଡଃ ପାଣିଗ୍ରାହୀଙ୍କ ପ୍ରତିଭା ଦେଶ

ବିଦେଶରେ ଚହଳ ସୃଷ୍ଟି କରିଥିଲା । ତାଙ୍କ ଗବେଷଣାତ୍ମକ ଇଂରାଜୀ ପୁସ୍ତକ ଲଣ୍ଡନ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମରେ ସ୍ଥାନ ପାଇଛି ।

କବି ଶ୍ରୀ ମୁରାରି ଜେନା ଓ ଶ୍ରୀ ବଂଶୀଧର ମିଶ୍ର ଡଃ ପାଣିଗ୍ରାହୀଙ୍କ ସମ୍ପର୍କରେ ସ୍ୱରଚିତ କବିତାମାନ ପାଠ କରିଥିଲେ ।

# ବିଭିନ୍ନ ପ୍ରତିଯୋଗିତାର ଫଳାଫଳ

## ୧ । କୁଞ୍ଜବିହାରୀ ଉପନ୍ୟାସ ପୁରସ୍କାର

ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ କୁଞ୍ଜବିହାରୀ ଉପନ୍ୟାସ ପାଣ୍ଡୁଲିପି ପ୍ରତିଯୋଗିତା ଅନୁଷ୍ଠିତ ହୋଇଯାଇଛି । ଏହି ପ୍ରତିଯୋଗିତାର ବିଗ୍ଚାରକ ଥିଲେ ସର୍ବଶ୍ରୀ ଶୁକଦେବ ସାହୁ, କୃଷ୍ଣଚନ୍ଦ୍ର ମହାନ୍ତି, ଡକ୍ଟର ବ୍ରଜମୋହନ ମହାନ୍ତି । 'ସୃଷ୍ଟି ଓ ନାରୀ' ପାଣ୍ଡୁଲିପିର ଲେଖିକା ଶ୍ରୀମତୀ ସୁଧାଂଶୁବାଳା ପଣ୍ଡା ଏହି ପୁରସ୍କାର (ଟ ୫୦୦.୦୦) ପାଇବାକୁ ଶ୍ରେଷ୍ଠ ବିବେଚିତ ହୋଇଛନ୍ତି ।

## ୨ । ଉତ୍କଳ ସାହିତ୍ୟ ସମାଜ ପ୍ରବନ୍ଧ ପ୍ରତିଯୋଗିତା

ଓଡ଼ିଆ ସମାଲୋଚନାର 'ଧାର ଓ ଧାରା' ଶୀର୍ଷକ ପ୍ରବନ୍ଧ ଶିରୋନାମାରେ ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଏହି ପ୍ରତିଯୋଗିତାର ବିଗ୍ଚାରକ ଥିଲେ ଅଧ୍ୟାପକ ବୈଷ୍ଣବଚରଣ ସାମଲ, ଡକ୍ଟର ଧନେଶ୍ୱର ମହାପାତ୍ର, ଅଧ୍ୟାପିକା ସୁଲୋଚନା ଦାସ । ଶ୍ରୀ ସଞ୍ଜୟକୁମାର ଷଡ଼ଙ୍ଗୀ ପ୍ରଥମ ସ୍ଥାନ ଅଧିକାର କରି ଏହି ପୁରସ୍କାର (ଟ ୧୫୦.୦୦) ପାଇବାକୁ ଶ୍ରେଷ୍ଠ ବିବେଚିତ ହୋଇଛନ୍ତି ।

## ୩ । ଗିରିଜାଶଙ୍କର ପ୍ରବନ୍ଧ ପ୍ରତିଯୋଗିତା

"ସମକାଳୀନ ପରିସ୍ଥିତିରେ ଓଡ଼ିଆ ଭାଷା ସଂସ୍କାର" ଶୀର୍ଷକ ପ୍ରବନ୍ଧ ଶିରୋନାମାରେ କଲେଜ ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ଏହି ପ୍ରତିଯୋଗିତାର ବିଗ୍ଚାରକ ଥିଲେ ଅଧ୍ୟାପକ ବୈଷ୍ଣବଚରଣ ସାମଲ ଓ ଶ୍ରୀ ରବିନାରାୟଣ ମହାପାତ୍ର । ଶ୍ରୀ ଗୋପାଳକୃଷ୍ଣ ଦାସ ଏହି ପୁରସ୍କାର (୧୦୦.୦୦) ପାଇବାକୁ ଶ୍ରେଷ୍ଠ ବିବେଚିତ ହୋଇଛନ୍ତି ।

## ୪ । ଗୌରୀଶଙ୍କର ପ୍ରବନ୍ଧ ପ୍ରତିଯୋଗିତା

"ଓଡ଼ିଆ ସାହିତ୍ୟର ବିକାଶ ଦଗରେ ଉତ୍କଳ ଦୀପକାର ଭୂମିକା" ଶୀର୍ଷକ ପ୍ରବନ୍ଧ ଶିରୋନାମାରେ କଲେଜ ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ଏହି ପ୍ରତି-ଯୋଗିତାର ବିଚାରକ ଥିଲେ ସର୍ବଶ୍ରୀ ଅଚ୍ୟୁତାନନ୍ଦ କର ଓ ଶ୍ରୀ ଯଜ୍ଞେଶ୍ୱର ତ୍ରିପାଠୀ । ଶ୍ରୀ ସଂଜୟକୁମାର ଷଡ଼ଙ୍ଗୀ ଏହି ପୁରସ୍କାର ( ୧୦୦.୦୦) ପାଇବାକୁ ଶ୍ରେଷ୍ଠ ବିବେଚିତ ହୋଇଛନ୍ତି ।

## ୫ । ଅନ୍ନପୂର୍ଣ୍ଣା ପ୍ରବନ୍ଧ ପ୍ରତିଯୋଗିତା

"ଓଡ଼ିଆ ସାହିତ୍ୟକୁ ନାରୀକବି ଅନ୍ନପୂର୍ଣ୍ଣା ପଟ୍ଟନାୟକଙ୍କ ଦାନ" ଶୀର୍ଷକ ପ୍ରବନ୍ଧ ଶିରୋନାମାରେ କଲେଜ ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ଏହି ପ୍ରତିଯୋଗିତାର ବିଚାରକ ଥିଲେ ଅଧ୍ୟାପକ ପରାଣି ପଟ୍ଟନାୟକ ଓ ଅଧ୍ୟାପକ ବୈଷ୍ଣବଚରଣ ସାମଲ । ଶ୍ରୀ ଚନ୍ଦ୍ରବିଜୟୀ ମିଶ୍ର ଏହି ପୁରସ୍କାର ( ଟ ୩୦୦.୦୦) ପାଇବାକୁ ଶ୍ରେଷ୍ଠ ବିବେଚିତ ହୋଇଛନ୍ତି ।

## ୬ । ଗୌରାଙ୍ଗଚରଣ ଶ୍ଳୋକ ଆବୃତ୍ତି ପ୍ରତିଯୋଗିତା

ସ୍କୁଲ ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ଏହି ପ୍ରତିଯୋଗିତାର ବିଚାରକ ଥିଲେ ପଣ୍ଡିତ ମାୟାଧର ନନ୍ଦ, ଡକ୍ଟର ହରେକୃଷ୍ଣ ଶତପଥୀ ଓ ଶ୍ରୀ ବ୍ରଜକିଶୋର ଦାସ । କୁମାରୀ ଶ୍ରିୟାସ୍ମିତା ମହାନ୍ତି, ପ୍ରଥମ; କୁମାରୀ ପ୍ରାଚୀ ଦାଶ ଓ ଶ୍ରୀ ଦେବାଶିଷ ଆଗ୍ରୱାଲ ମିଳିତ ଭାବେ ଦ୍ୱିତୀୟ, କୁମାରୀ ମଧୁମୀତା ମହାପାତ୍ର ତୃତୀୟ ସ୍ଥାନ ଅଧିକାର କରିଛନ୍ତି । ଏହି ପୁରସ୍କାରର ମୂଲ୍ୟ ଯଥାକ୍ରମେ ଟ ୬୦.୦୦, ଟ ୫୦.୦୦ ଓ ଟ ୪୦.୦୦ । ଏହି ପ୍ରତିଯୋଗିତାର ଅନ୍ୟତମ ପ୍ରତି-ଯୋଗୀ ଶ୍ରୀ କୃତାର୍ଥସାରଥି ସାମନ୍ତରାୟ ସ୍ୱତନ୍ତ୍ର ପୁରସ୍କାର ପାଇବାକୁ ଯୋଗ୍ୟ ବିବେଚିତ ହୋଇଛନ୍ତି ।

## ୭ । ତାରାମଣି ସ୍ମୃତି କବିତା ଆବୃତ୍ତି ପ୍ରତିଯୋଗିତା

ତାରାମଣି ସ୍ମୃତି କବିତା ଆବୃତ୍ତି ପ୍ରତିଯୋଗିତା ସ୍କୁଲ ଛାତ୍ରଛାତ୍ରୀଙ୍କ ମଧ୍ୟରେ 'କ' ଓ 'ଖ' ଦୁଇଟି ବିଭାଗରେ ଅନୁଷ୍ଠିତ ହୋଇଯାଇଛି । ବିଚାରକ ଥିଲେ ସର୍ବଶ୍ରୀ ମୁରାରିମୋହନ ଜେନା, ଅଧ୍ୟାପକ କୃଷ୍ଣଚରଣ ମହାନ୍ତି, ଅଧ୍ୟାପକ ରମେଶ-ପ୍ରସାଦ ପାଣିଗ୍ରାହୀ ଓ ଶ୍ରୀମତୀ ବୀଣା ମହାପାତ୍ର ।

'କ' ବିଭାଗରେ ଶ୍ରୀ ସାର୍ଥକସାରଥି ସାମନ୍ତରାୟ ପ୍ରଥମ, କୁମାରୀ ବିରାଜଲକ୍ଷ୍ମୀ ତ୍ରିପାଠୀ ଦ୍ୱିତୀୟ, ଶ୍ରୀ ଜ୍ୟୋତିର୍ମୟ ମହାପାତ୍ର ତୃତୀୟ ସ୍ଥାନ ଅଧିକାର କରିଛନ୍ତି ।

'ଖ' ବିଭାଗରେ କୁମାରୀ ସରିତା ଆଗ୍ରୱାଲ ପ୍ରଥମ, କୁମାରୀ ସଂଘମିତ୍ରା ମଣ୍ଡ ଦ୍ୱିତୀୟ ଓ କୁମାରୀ ସମିତା ଆଗ୍ରୱାଲ ତୃତୀୟ ସ୍ଥାନ ଅଧିକାର କରିଛନ୍ତି । ପୁରସ୍କାରର ମୂଲ୍ୟ ଉଭୟ ବିଭାଗ ପାଇଁ ସମାନ ଏବଂ ଏହା ଯଥାକ୍ରମେ ଟ ୬୦.୦୦, ଟ ୫୦.୦୦ ଓ ଟ ୪୦.୦୦ ।

## ୮ । ମନମୋହିନୀ କବିତା ରଚନା ପ୍ରତିଯୋଗିତା

କଲେଜ ତଥା ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ନାରୀକବି ମନମୋହିନୀ କବିତା ରଚନା ପ୍ରତିଯୋଗିତା ଅନୁଷ୍ଠିତ ହୋଇଯାଇଛି । ବିଚାରକ ଥିଲେ ସର୍ବଶ୍ରୀ ମୁରାରିମୋହନ ଜେନା, ଅଧ୍ୟାପକ ସନତଦାସ ପଟ୍ଟନାୟକ ଓ ଶ୍ରୀମତୀ ଶକୁନ୍ତଳା ଦେବୀ । ଏହି ପ୍ରତିଯୋଗିତାରେ ସୁବାସଚନ୍ଦ୍ର ରାଉତ, କୁମାରୀ ସୌଭାଗିନୀ ନାୟକ ଓ ଶ୍ରୀ ସୌମେନ୍ଦ୍ରକୁମାର ଜେନା ଯଥାକ୍ରମେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରିଛନ୍ତି । ପୁରସ୍କାରର ମୂଲ୍ୟ ଯଥାକ୍ରମେ ଟ ୬୦.୦୦, ଟ ୫୦.୦୦, ଓ ଟ ୪୦.୦୦ ।

# ନୂତନ ପୁରସ୍କାର ପ୍ରଚଳନ

ସୁଲେଖିକା ଡକ୍ଟର ପ୍ରତିଭା ରାୟ ତାଙ୍କ ସ୍ୱର୍ଗବାସୀ ପିତା ପରଶୁରାମ ଦାସଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ସ୍କୁଲର ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ପରଶୁରାମ କ୍ଷୁଦ୍ରଗଳ୍ପ ପ୍ରତିଯୋଗିତା କରିବା ପାଇଁ ଉତ୍କଳ ସାହିତ୍ୟ ସମାଜକୁ ପାଞ୍ଚ ହଜାର ଟଙ୍କାର ଏକ ଚେକ୍ ପ୍ରଦାନ କରିଛନ୍ତି । ତାଙ୍କ ସର୍ତ୍ତାନୁଯାୟୀ ଉକ୍ତ ପାଞ୍ଚ ହଜାର ଟଙ୍କା ମୂଳଧନକୁ ସ୍ଥାୟୀ ଜମା ଆକାରରେ ବ୍ୟାଙ୍କରେ ରଖାଯାଇ ଚାରି ହଜାର ଟଙ୍କାର ମିଳିଥିବା ବାର୍ଷିକ ସୁଧରେ ଆସନ୍ତା ବର୍ଷଠାରୁ କୃତୀ ପ୍ରତିଯୋଗୀଙ୍କୁ ଦୁଇ ଗୋଟି ପୁରସ୍କାର ପ୍ରଦାନ କରାଯିବ । ଏକ ହଜାର ଟଙ୍କାର ସୁଧରୁ ପ୍ରାପ୍ତ ଅର୍ଥକୁ ପ୍ରତିଯୋଗିତା କାର୍ଯ୍ୟକାରୀ କରିବା ଦିଗରେ ଖର୍ଚ୍ଚ କରାଯିବ । ପ୍ରତିଯୋଗିତାରେ ପ୍ରଥମ ଓ ଦ୍ୱିତୀୟ ସ୍ଥାନ ଅଧିକାର କରିଥିବା ପ୍ରତିଯୋଗୀଙ୍କୁ ଯଥାକ୍ରମେ ଦୁଇ ଶହ ପଚାଶ ଟଙ୍କା ଓ ଦେଢ଼ଶହ ଟଙ୍କା ପୁରସ୍କାର ସ୍ୱରୂପ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନରେ ପ୍ରଦାନ କରାଯିବ ।

# ପାଠାଗାରକୁ ପୁସ୍ତକ ପ୍ରଦାନ

ଏହି ସମୟ ମଧ୍ୟରେ ଶ୍ରୀ ଶ୍ରୀଧର ମହାପାତ୍ର, ଡାକ୍ତର ବିଷ୍ଣୁପ୍ରିୟା ଦେବୀ, ଶ୍ରୀ କ୍ଷେତ୍ରବର ନାୟକ, ସ୍ୱର୍ଗତ ଶରତଚନ୍ଦ୍ର ମୁଖାର୍ଜୀ, ଡକ୍ଟର ବିଦ୍ୟାଧର ମିଶ୍ର ତାଙ୍କର କେତେକ ପୁସ୍ତକ ସାହିତ୍ୟ ସମାଜ ଆନୁକୂଲ୍ୟରେ ପରିଚାଳିତ [ଉତ୍କଳ ଗୌରବ ମଧୁସୂଦନ ପାଠାଗାରକୁ ଦାନ କରିଛନ୍ତି । ଆଉ ମଧ୍ୟ ଦୈନିକ 'ସମାଜ', 'ପ୍ରଜାତନ୍ତ୍ର', 'ମାତୃଭୂମି', 'ଧରିତ୍ରୀ', 'ପ୍ରଗତିବାଦୀ', 'ରାଷ୍ଟ୍ରଦୂତ' ଏବଂ ମାସିକ 'ଝଙ୍କାର', 'ପୌରୁଷ', 'ଦିବ୍ୟ ସନ୍ଦେଶ', 'କଲ୍ୟାଣୀ', 'ସନାତନ ସାରଥି', 'ଉନ୍ନୟନ', 'ନିଆଁଖୁଣ୍ଟା', 'ସର୍ବୋଦୟ', 'ବିସ୍ଫୋରଣ', 'ସେବକ' 'ସମବାୟ ସମାଚାର', 'News from the Israel, SPAN ଏବଂ 'ପତିତପାବନ' ପରି ବିଭିନ୍ନ ସମୟରେ ବିଭିନ୍ନ ସଂସ୍ଥା ପକ୍ଷରୁ ପ୍ରକାଶିତ ପତ୍ରପତ୍ରିକା ଉତ୍କଳ ସାହିତ୍ୟ ସମାଜ ପାଠାଗାରକୁ ବିନା ମୂଲ୍ୟରେ ଆସୁଅଛି । ଯୋଗଦା ମହିମା ଗାଦିର ବିଶ୍ୱନାଥ ବାବାଙ୍କ ରଚିତ ପୁସ୍ତକ ଓ ଉତ୍କଳ ପାଠକ ସଂସଦ ପକ୍ଷରୁ ପ୍ରକାଶିତ ଏକ ସଂକଳନ ମଧ୍ୟ ପାଠାଗାରକୁ ମିଳିଅଛି ।

ଆୟକର ବିଭାଗର ଅଫିସର ଶ୍ରୀ ଗୋପାଳପ୍ରସାଦ ନନ୍ଦଙ୍କ ବ୍ୟକ୍ତିଗତ ସାହାଯ୍ୟ ସହଯୋଗ ଫଳରେ ପାଠାଗାରରେ ଥିବା ଅନେକ ଦୁଷ୍ପ୍ରାପ୍ୟ ଓ ଦୁର୍ଲ୍ଲଭ ପୁସ୍ତକ ଓ ପତ୍ରପତ୍ରିକାର ଜେରକ୍ସ କପି କରାଯାଇପାରିଛି । ଏଣୁ ଶ୍ରୀ ନନ୍ଦଙ୍କୁ ଆମେ ଗଭୀର କୃତଜ୍ଞତା ଜ୍ଞାପନ କରୁଛୁ ।

ଆଗ୍ରହୀ ଛାତ୍ରଛାତ୍ରୀ ଓ ଜନସାଧାରଣ ପାଠାଗାରରେ ଥିବା ବିଭିନ୍ନ ପୁସ୍ତକ ଓ ପତ୍ରପତ୍ରିକା ନିୟମିତ ପାଠ କରୁଛନ୍ତି । ତାହାଛଡ଼ା ବହୁ ଗବେଷକ ପାଠାଗାରରେ ଥିବା ବହୁ ଅମୂଲ୍ୟ ଓ ଦୁଷ୍ପ୍ରାପ୍ୟ ପତ୍ରପତ୍ରିକାମାନ ପାଠ କରିବା ସଙ୍ଗେ ସଙ୍ଗେ ସେଥିରୁ ବିଭିନ୍ନ ଟିକା ଟିପ୍ପଣୀ ସଂଗ୍ରହ କରି ସେମାନଙ୍କର ଥେସିସ୍ କାର୍ଯ୍ୟରେ ବ୍ୟବହାର କରୁଛନ୍ତି ଓ ଡକ୍ଟରେଟ୍ ପାଇ ପାରିଛନ୍ତି ।

ସାହିତ୍ୟ ସମାଜର ପାଠାଗାରରେ ଥିବା ପୁସ୍ତକ ଓ ପତ୍ରପତ୍ରିକା ବନ୍ଧାଇ ନିମନ୍ତେ ବିଶିଷ୍ଟ ପ୍ରକାଶକ ଓ ଲେଖକ ଶ୍ରୀ ଶ୍ରୀଧର ମହାପାତ୍ର ଚାରି ଶହ ଅଠାନବେ ଟଙ୍କା ଦାନ କରିଛନ୍ତି । ଶ୍ରୀ ହୃଦୟାନନ୍ଦ ନାୟକ ମଧ୍ୟ ଏଥିପାଇଁ ପାଞ୍ଚଶତ ଟଙ୍କା ପ୍ରଦାନ କରିଛନ୍ତି । ଉଭୟଙ୍କୁ ଅନୁଷ୍ଠାନ ପକ୍ଷରୁ କୃତଜ୍ଞତା ଜଣାଉଛୁ ।

## କାର୍ଯ୍ୟନିର୍ବାହିକା ସମିତି ବୈଠକ

ଗତ ବାର୍ଷିକ ଅଧିବେଶନଠାରୁ ଏ ଯାବତ୍ କାର୍ଯ୍ୟ ନିର୍ବାହିକା ସମିତିର ବାରଟି ବୈଠକ ଅନୁଷ୍ଠିତ ହୋଇଛି । ଏତଦ୍‌ବ୍ୟତୀତ ଉତ୍କଳ ଗୌରବ ମଧୁସୂଦନ ପାଠାଗାର କମିଟି ବୈଠକ ବସି କେତେକ ପ୍ରସ୍ତାବ ଗୃହୀତ ହୋଇଛି ।

# ଉନ୍ନୟନ କମିଟି ବୈଠକ

ଉତ୍କଳ ସାହିତ୍ୟ ସମାଜର ରକ୍ଷଣାବେକ୍ଷଣ, ସଂପ୍ରସାରଣ ନୂତନ ଗୃହ ନିର୍ମାଣ ତଥା ସାହିତ୍ୟ ସମାଜର ସର୍ବାଙ୍ଗୀନ ଉନ୍ନତିକୁ ଆଖି ଆଗରେ ରଖି ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଏକ ଉନ୍ନୟନ କମିଟି ଗଠନ କରାଯାଇଛି । ଏଥିରେ ସର୍ବଶ୍ରୀ ଚିଦାନନ୍ଦ କର, ଶୁକଦେବ ସାହୁ, ଶଙ୍କର୍ଷଣ ମଙ୍ଗରାଜ, ସଂଗ୍ରାମକେଶରୀ ମହାପାତ୍ର, ପଠାଣି ପଟ୍ଟନାୟକ, ମୁରାରିମୋହନ ଜେନା, ପରମାନନ୍ଦ ଅଧିକାରୀ, ହୃଦୟାନନ୍ଦ ନାୟକ, ମନୋରଞ୍ଜନ ଦାସ, ଶ୍ରୀମତୀ ମନୋରମା ମହାପାତ୍ର ଓ ଡକଟର ପ୍ରତିଭା ରାୟ ସଭ୍ୟ ଭାବେ ରହିଛନ୍ତି । ଉନ୍ନୟନ କମିଟି ବୈଠକରେ ସର୍ବସମ୍ମତ ନିଷ୍ପତ୍ତିକ୍ରମେ ବଦାନ୍ୟ ବ୍ୟକ୍ତିବିଶେଷ, ଅନୁଷ୍ଠାନ କିମ୍ବା ସରକାରୀ ସ୍ତରରୁ ସାହାଯ୍ୟ ପାଇଁ ଏକ ପାଣ୍ଠି ଗଠନ କରାଯାଇଛି ଓ ଏହି ଉନ୍ନୟନ ପାଣ୍ଠି ପାଇଁ ଅର୍ଥ ସଂଗ୍ରହ କରିବାକୁ ସ୍ଥିର କରାଯାଇ ଦୈନିକ ଖବରକାଗଜଗୁଡ଼ିକରେ ସମ୍ବାଦ ମଧ୍ୟ ପ୍ରକାଶ କରାଯାଇଛି । ଆଲୋଚିତ ବର୍ଷରେ ଉକ୍ତ ପାଣ୍ଠିକୁ ସ୍ୱତଃପ୍ରବୃତ୍ତ ହୋଇ କମିଟିର ସଦସ୍ୟ ଶ୍ରୀ ହୃଦୟାନନ୍ଦ ନାୟକ ଏକ ହଜାର ଟଙ୍କା ଦାନ କରିଛନ୍ତି । ଏହି ଦାନ ସକାଶେ ଶ୍ରୀଯୁକ୍ତ ନାୟକଙ୍କୁ ଅନୁଷ୍ଠାନ ପକ୍ଷରୁ କୃତଜ୍ଞତା ଜଣାଉଛୁ । ଇତିମଧ୍ୟରେ ସହରର ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଭେଟି ଉନ୍ନୟନ ପାଣ୍ଠିର କଳେବର ବୃଦ୍ଧି କରିବା ଦିଗରେ ସାହାଯ୍ୟ ସହଯୋଗ କରିବାକୁ ଅନୁରୋଧ କରାଯିବା ସକାଶେ ଏକ ତାଲିକା ଚୂଡ଼ାନ୍ତ କରାଯାଇଛି ।

# ସାହିତ୍ୟ ସମାଜକୁ ଅନୁଦାନ

ଗତ ଆର୍ଥିକ ବର୍ଷମାନଙ୍କରେ ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗ ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀର କର୍ତ୍ତୃପକ୍ଷଙ୍କଠାରୁ ସାତ ହଜାର ପାଞ୍ଚ ଶହ ଟଙ୍କା ଅନୁଦାନ ସ୍ୱରୂପ ସାହିତ୍ୟ ସମାଜକୁ ମିଳିଛି । ଏଥିପାଇଁ ସଂପୃକ୍ତ କର୍ତ୍ତୃପକ୍ଷ ଧନ୍ୟବାଦାର୍ହ ।

ଏହି କାର୍ଯ୍ୟକାଳ ମଧ୍ୟରେ ଲୋକସେବକ ମଣ୍ଡଳର ଅଧ୍ୟକ୍ଷ ତଥା 'ସମାଜ' ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥ ଉତ୍କଳ ସାହିତ୍ୟ ସମାଜକୁ ପାଞ୍ଚ ହଜାର ଟଙ୍କାର ଖଣ୍ଡିଏ ଚେକ୍ ପ୍ରଦାନ କରିଛନ୍ତି । ଏହା ଉନ୍ନୟନ ପାଣ୍ଠିରେ ଗଚ୍ଛିତ ହେଲା ।

ଶ୍ରୀଯୁକ୍ତ ରଥଙ୍କର ଏହି ବଦାନ୍ୟତା ପାଇଁ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ତାଙ୍କୁ କୃତଜ୍ଞତା ଜ୍ଞାପନ କରାଯାଉଛି । ପୁନଶ୍ଚ 'ସମାଜ' ଅନୁଷ୍ଠାନ ବିନାମୂଲ୍ୟରେ ବିଭିନ୍ନ ସଭାସମିତିର ନିମନ୍ତ୍ରଣ ପତ୍ର ଛାପିଥିବାରୁ ଏହି ବଦାନ୍ୟତା ଓ ସହୃଦୟତା ପାଇଁ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ତାଙ୍କୁ ଧନ୍ୟବାଦ ଅର୍ପଣ କରାଯାଉଛି ।

## ପୁସ୍ତକ ପ୍ରକାଶନ

ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ବିଭିନ୍ନ ସମୟରେ ଅନୁଷ୍ଠିତ ହୋଇଥିବା ପ୍ରତିଯୋଗିତାଗୁଡ଼ିକରେ ପୁରସ୍କାର ଲାଭ କରିଥିବା ପ୍ରବନ୍ଧ ଓଡ଼ିଆ ସାହିତ୍ୟରେ ହାସ୍ୟରସ ପୁସ୍ତକାକାରରେ ପ୍ରକାଶିତ ହୋଇଛି । ଓଡ଼ିଆ ସାହିତ୍ୟର ସୃଷ୍ଟିଶୀଳ ପ୍ରତିଭା ସ୍ୱର୍ଗତ ଗୋବିନ୍ଦ ରଥ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, କର୍ମବୀର ଗୌରୀଶଙ୍କର ରାୟ, ପଲ୍ଲୀକବି ନନ୍ଦକିଶୋର ବଳ, ପଣ୍ଡିତ ନୀଳକଣ୍ଠ ଦାସଙ୍କ ଜୀବନୀ ସମ୍ବଳିତ ପ୍ରବନ୍ଧମାନ ଏକତ୍ର କରଯାଇ "ପ୍ରତିଭାପଞ୍ଚକ" ନାମରେ ଏକ ପୁସ୍ତକ ପ୍ରକାଶ କରଯାଇଛି । ସତ୍ୟବାଦୀ ଯୁଗର ଅନ୍ୟତମ ସାହିତ୍ୟରଥୀ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଜନ୍ମ ଶତବାର୍ଷିକୀ ଅବସରରେ ତାଙ୍କ ଜୀବନୀ ଓ କରଣି ସମ୍ପର୍କୀୟ ପୁସ୍ତକ ନୀଳକଣ୍ଠ ପରିକ୍ରମା ପ୍ରକାଶ କରଯିବାର ବ୍ୟବସ୍ଥା କରଯାଇଛି ।

ସ୍ୱନାମଧନ୍ୟା ଲେଖିକା ସ୍ୱର୍ଗତା ସରଳା ଦେବୀଙ୍କର ଅପ୍ରକାଶିତ ପୁସ୍ତକ-ଗୁଡ଼ିକୁ ପ୍ରକାଶ କରିବା ପାଇଁ ଅନୁରୋଧ କରି ଉତ୍କଳ ମହିଳା ସମିତିର ସଭ୍ୟା-ମାନେ ସାହିତ୍ୟ ସମାଜକୁ ଏକଶତ ଟଙ୍କା ଦାନ କରିଛନ୍ତି । କବି ଶ୍ରୀ ଅନନ୍ତ ପଟ୍ଟନାୟକ ଏହି ଉଦ୍ଦେଶ୍ୟରେ ଏକ ଶତ ଟଙ୍କା ଦାନ କରିଛନ୍ତି ।

## ସାହିତ୍ୟିକ ସହାୟକ ପାଣ୍ଠି

ତା ୨୮ । ୪ । ୮୭ ରିଖରେ ସାହିତ୍ୟିକ ସହାୟକ ପାଣ୍ଠିର ବୈଠକ ଅନୁଷ୍ଠିତ ହୋଇଥିଲା । ଉକ୍ତ ବୈଠକର ନିଷ୍ପତ୍ତି କ୍ରମେ ଆର୍ଥିକ ଦୁର୍ଗତି ମଧ୍ୟରେ ଥିବା ଦୁଇ ଜଣ ସାହିତ୍ୟିକଙ୍କୁ କିଞ୍ଚିତ ଅର୍ଥ ସାହାଯ୍ୟ କରିବା ପାଇଁ ସ୍ଥିର ହେଲା । ଉତ୍କଳର ଦ୍ୱିତୀୟ ଭଞ୍ଜକବି ନାମରେ ଖ୍ୟାତ ଶ୍ରୀ ଗୋଲଖଚନ୍ଦ୍ର ପ୍ରଧାନ ଓ ପାରଳା-ଖେମୁଣ୍ଡିର କବି ଶ୍ରୀ ଶଶିଭୂଷଣ ମିଶ୍ରଙ୍କୁ ଦୁଇ ଶହ ପଚାଶ ଟଙ୍କା ଅନୁଦାନ ସାହିତ୍ୟିକ ସହାୟକ ପାଣ୍ଠିରୁ ଦିଆଯାଇଛି ।

## ନୂତନ ସଭ୍ୟ ଗ୍ରହଣ

ଆଲୋଚ୍ୟ ସମୟ ମଧ୍ୟରେ ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟ

ସର୍ବଶ୍ରୀମତି ରେଣୁବାଳା ସାହୁ
ଶୁଚିସ୍ମିତା ଦାସ
ସ୍ନିଗ୍ଧା ବିଶ୍ୱାଳ
ସରଳା ମହାପାତ୍ର
ଗୀତା ହୋତା

ଉଷା ପଟେଲ
ସର୍ବଶ୍ରୀ ଦେବୀପ୍ରସାଦ ଧଳ
ଶଙ୍କର୍ଷଣ ମିଶ୍ର
ଅରବିନ୍ଦ ରାଉତରାୟ
ଶ୍ୟାମସୁନ୍ଦର ଦାସ
ଧନେଶ୍ୱର ମହାପାତ୍ର
ସୁଶୀଲକୁମାର ପଟ୍ଟନାୟକ
ଗୌର ପଟ୍ଟନାୟକ
ଲକ୍ଷ୍ମୀନାରାୟଣ ରାୟସିଂହ
ବ୍ରଜକିଶୋର ଦାସ
ଡକ୍ଟର ଖଗେନ୍ଦ୍ରନାଥ ମଲ୍ଲିକ
ସତ୍ୟନାରାୟଣ ପଣ୍ଡା
ରବୀନ୍ଦ୍ରକୁମାର ହୋତା
ବିଚିତ୍ରାନନ୍ଦ କାନୁନଗୋ
ନଟବର ସାହୁ
ରମାକାନ୍ତ ଜେନା
କୃଷ୍ଣଚନ୍ଦ୍ର ଚିନାର
ହରେକୃଷ୍ଣ ଦାଶ
ପ୍ରମୋଦକୁମାର ମଙ୍ଗରାଜ
ନିର୍ମଳଚନ୍ଦ୍ର ସାମଲ
ସାତକଡ଼ି ହୋତା
ବିଘ୍ନରାଜ ପଟେଲ
ଗୋପୀନାଥ ଦାଶ
ରଙ୍ଗଲାଲ ପଟ୍ଟନାୟକ
ଭବପ୍ରସାଦ ମହାପାତ୍ର
କ୍ଷେତ୍ରବର ନାଏକ
ଶୁଭନାରାୟଣ ସ୍ୱାଇଁ,
ଗୋବର୍ଦ୍ଧନଚନ୍ଦ୍ର ପଟ୍ଟନାୟକ
ଶ୍ରୀମତୀ ଜ୍ୟୋତିର୍ମଞ୍ଜରୀ ପଟ୍ଟନାୟକ
ଡଃ ସରୋଜିନୀ ଭୂୟାଁ
ସର୍ବଶ୍ରୀମତୀ ତିଲୋତ୍ତମା ସାହୁ
କୁନ୍ତଳାକୁମାରୀ ଆଚାର୍ଯ୍ୟ
ବୀଣାପାଣି ଲେଙ୍କା
ସର୍ବଶ୍ରୀ ନିରଞ୍ଜନ ପାତ୍ର

ପଣ୍ଡିତ ମାୟାଧର ନନ୍ଦ
ଗୋପାଳପ୍ରସାଦ ନନ୍ଦ
ସୂର୍ଯ୍ୟମଣି ସାମନ୍ତରାୟ
ନଗେନ୍ଦ୍ରକୁମାର ମହାନ୍ତି
ସର୍ବଶ୍ରୀମତୀ ଆରତି ମହାନ୍ତି
ହରପ୍ରିୟା ଦେବୀ
ପ୍ରମୋଦା ପରିଡ଼ା
ସର୍ବଶ୍ରୀ ହରିହର ବାହିନୀପତି
ପ୍ରଫୁଲ୍ଲ ମହାନ୍ତି
ନାରାୟଣ ସାହୁ
ଡକ୍ଟର ହରେକୃଷ୍ଣ ଶତପଥୀ
ଅରିଜିତ୍ ପଶାୟତ
ଡକ୍ଟର ଜଗନ୍ନାଥ ମହାନ୍ତି
ବେଣୁଧର ମହାପାତ୍ର
ପ୍ରଭାକର ସ୍ୱାଇଁ
ଡକ୍ଟର ବାସୁଦେବ ସାହୁ
ଡକ୍ଟର ଗୁରୁପ୍ରସାଦ ମହାନ୍ତି
ହିମାଂଶୁଶେଖର ପଟ୍ଟନାୟକ
ବିଦ୍ୟାଧର ରାଉତରାୟ (ତା ୨୭-୫-୮୭ରିଖରେ ପରଲୋକଗତ)
ଧରଣୀଧର ନାଥ
ପ୍ରାଣକୃଷ୍ଣ ରାଉତରାୟ
ଜଗବନ୍ଧୁ ପାଢ଼ୀ
ଡକ୍ଟର ଶିବପ୍ରସାଦ ଦାଶ
ଡାଃ ଦୀନେଶ ଷଡ଼ଙ୍ଗୀ
ଡାଃ ବିନି ଷଡ଼ଙ୍ଗୀ
ଡାଃ ହରିହର ପଟ୍ଟନାୟକ
ଡଃ ଗଙ୍ଗାଧର ବଳ
ଶ୍ରୀମତୀ ଲତା ଭୋଳ
ଶ୍ରୀ ଶୈଳବିହାରୀ ଚୌଧୁରୀ
ଶ୍ରୀମତୀ ପ୍ରଶାନ୍ତି ହୋତା
ଶ୍ରୀ ହାଡ଼ିବନ୍ଧୁ ମିଶ୍ର
ସର୍ବଶ୍ରୀମତୀ ସାବିତ୍ରୀ ଶାସ୍ତ୍ରୀ
ଜୟଶ୍ରୀ ଦାସ
ଶ୍ରୀ ସ୍ୱରାଜ୍ୟକୁମାର ଭଞ୍ଜ

ସର୍ବଶ୍ରୀମତୀ କଲ୍ୟାଣୀ ମହାପାତ୍ର
ଇନ୍ଦିରା ଦେବୀ
ଶ୍ରୀ ସୁଭାଷ ମହତାବ

ଆଲୋଚିତ ସମୟ ମଧ୍ୟରେ ଓଡ଼ିଶାର କୋରାପଟ, ସମ୍ବଲପୁର, ଗଞ୍ଜାମ ଓ ମୟୂରଭଞ୍ଜ ଜିଲାର ବିଭିନ୍ନ ସାହିତ୍ୟ ଅନୁଷ୍ଠାନମାନଙ୍କ ସହ ସମ୍ପର୍କ ସ୍ଥାପନ ଓ ପ୍ରାନ୍ତ ଅଞ୍ଚଳରେ ଓଡ଼ିଆ ଭାଷାର ସୁରକ୍ଷା ଦିଗରେ ଯତ୍‌ପରୋନାସ୍ତି ଉଦ୍ୟମ କରାଯାଇଛି । ଫଳରେ ସିଂହଭୂମ କଳିଙ୍ଗ ସାହିତ୍ୟ ସମାଜ ଓ ଗୁଣୁପୁର ଅଞ୍ଚଳରୁ ଆମ୍ଭେମାନେ ସେଠାରେ ଶାଖା କରିବା ନିମନ୍ତେ ଓ ବାର୍ଷିକ ଅଧିବେଶନ ବିଚ୍ଛିନ୍ନାଞ୍ଚଳରେ କରିବା ନିମନ୍ତେ ଆମନ୍ତ୍ରଣ ପାଇଛୁ । ମାତ୍ର ଅର୍ଥାଭାବ ଏ ପଥରେ ପ୍ରଧାନ ପ୍ରତିବନ୍ଧକ । ଓଡ଼ିଶାବାହାରେ ତଥା ଭାରତ ବାହାରେ ଥିବା ଓଡ଼ିଆ ଅନୁଷ୍ଠାନ ସହିତ ମଧ୍ୟ ଆମେ ଯୋଗାଯୋଗ ସ୍ଥାପନ କରିପାରିଛୁ । ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପ୍ରଚାର ଦିଗରେ ପ୍ରଚେଷ୍ଟାକୁ ପ୍ରୋତ୍ସାହନ ଦେବା ଦିଗରେ ଉତ୍କଳ ସାହିତ୍ୟ ସମାଜ ନିଷ୍ଠାର ସହ କାର୍ଯ୍ୟ କରୁଅଛି ।

ପ୍ରାଚୀନ ସାହିତ୍ୟର ପୁନରୁଦ୍ଧାର ନିମନ୍ତେ ଲୋକଲୋଚନର ଅଗୋଚରରେ ଥିବା କବି କୃତିକୁ ଜନସମ୍ମୁଖରେ ପ୍ରଦର୍ଶନ ନିମନ୍ତେ ଅନୁଷ୍ଠାନ ପକ୍ଷରୁ ଅନୁଶୀଳନ ଓ ଅନୁଧ୍ୟାନ ହୋଇଛି । ଅର୍ଥର ବ୍ୟବସ୍ଥା ହୋଇପାରିଲେ ନିକଟରେ ବହୁ ଅପ୍ରକାଶିତ ମୂଲ୍ୟବାନ ପୁସ୍ତକ ପ୍ରକାଶ କରିବା ଦିଗରେ ଉତ୍କଳ ସାହିତ୍ୟ ସମାଜ ବିହିତ ପଦକ୍ଷେପ ନେବାକୁ ସ୍ଥିର କରିଛି । ପ୍ରାଚୀନ ପତ୍ରପତ୍ରିକାର ସଂରକ୍ଷଣ ତଥା ମାଇକ୍ରୋଫିଲ୍ମ ପାଇଁ ଦିଲ୍ଲୀ ସର୍ବଭାରତୀୟ ସଂସ୍ଥା ସହିତ ଆମେ ଯୋଗାଯୋଗ ସ୍ଥାପନ କରିଥିଲୁ । ଏ ଦିଗରେ କେତେକ ମୌଳିକ ଅସୁବିଧା ରହିଥିବାରୁ ତାହା କାର୍ଯ୍ୟରେ ପରିଣତ ହୋଇପାରି ନାହିଁ । ନିକଟ ଭବିଷ୍ୟତରେ ସର୍ତ୍ତ ପୂରଣ କରିପାରିଲେ ଆମେ ଏ କାର୍ଯ୍ୟକୁ ଆଗେଇ ନେଇପାରିବା ।

ଉତ୍କଳ ସାହିତ୍ୟ ସମାଜର ପୂର୍ଣ୍ଣାଙ୍ଗ ଇତିହାସ ଇଂରଜୀ ଓ ଓଡ଼ିଆରେ ପ୍ରକାଶନ କାର୍ଯ୍ୟ ହାତକୁ ନିଆଯାଇଛି । ଏହାବ୍ୟତୀତ ବିଶିଷ୍ଟ ସାହିତ୍ୟିକମାନଙ୍କ ରଚିତ ପ୍ରବନ୍ଧାବଳୀ ପ୍ରକାଶନ ଦିଗରେ ପଦକ୍ଷେପ ନିଆଯାଇଛି । ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିର ପ୍ରଚାର ଓ ପ୍ରସାର ଉପାନ୍ତ, ଅଞ୍ଚଳବାସୀଙ୍କୁ ଐତିହ୍ୟ ସଂସ୍କୃତି ଓ ପ୍ରାଚୀନ ଓଡ଼ିଆ ସାହିତ୍ୟ ସମ୍ପର୍କରେ ବିଦିତ କରାଇବା ଦିଗରେ ନିରବଚ୍ଛିନ୍ନ ଉଦ୍ୟମ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ କରାଯାଇଛି । ଏ ଦିଗରେ କୋରାପୁଟ, ସିଂହଭୂମ ଓ ରାଉରକେଲାର ସାହିତ୍ୟ ଅନୁଷ୍ଠାନମାନଙ୍କ ସହଯୋଗ ଉଲ୍ଲେଖଯୋଗ୍ୟ ।

ସାହିତ୍ୟ ସମାଜର ଗୃହ ସଂପ୍ରସାରଣ, ନବୀନ ଲେଖକମାନଙ୍କର ରଚନା ପ୍ରକାଶନ ପାଇଁ ପ୍ରକାଶନ ସଂସ୍ଥା, ମାସିକ ପତ୍ରିକା ପ୍ରକାଶନ, ଗବେଷଣା କେନ୍ଦ୍ର ସ୍ଥାପନ, ଅତିଥିଶାଳା ନିର୍ମାଣ, ପୁସ୍ତକ ପ୍ରକାଶନ, ପାଠାଗାରର କଳେବର ବୃଦ୍ଧି ପାଇଁ ଯୋଜନା କରଯାଇଛି ।

ସୁଖର କଥା, ବଦାନ୍ୟବ୍ୟକ୍ତିମାନେ ଉନ୍ନୟନ ପାଣ୍ଠିକୁ ଟ ୧୨,୨୦୦ଟଙ୍କା (ବାର ହଜାର ଦୁଇଶହ) ଦେଇଥିବା ଏକ ଶୁଭ ସୂଚନା । ସାହିତ୍ୟପ୍ରେମୀ ସୁଧୀ ଜନ-ସାଧାରଣ ମୁକ୍ତହସ୍ତରେ ଦାନ କରି ଏହି ପବିତ୍ର ଅନୁଷ୍ଠାନକୁ ସମୃଦ୍ଧ କରିବା ଦରକାର । ଭାଷା ଓ ସାହିତ୍ୟର ସୁରକ୍ଷା ପାଇଁ ସାହିତ୍ୟସାଧକ ଓ ସଂଗଠକମାନେ ଦେଶ-ପ୍ରେମରେ ଉଦ୍‌ବୁଦ୍ଧ ହୋଇ ଏହି ମହାନ ଜାତି ଗଠନ କାର୍ଯ୍ୟରେ ପୂର୍ଣ୍ଣ ପ୍ରାଣରେ ସହଯୋଗ କଲେ ଅଚିରେ ଲକ୍ଷ୍ୟ ପୂରଣ ହୋଇପାରିବ । ଏହି ବାଣୀପୀଠର ସୁରକ୍ଷା ପାଇଁ ଆମେ ସମସ୍ତଙ୍କର ସହଯୋଗ ପ୍ରାର୍ଥନା କରୁଅଛୁ । କଳା ଓ ସଂସ୍କୃତିର ବିକାଶ ପାଇଁ ସୁଚିନ୍ତିତ ଯୋଜନାକୁ ଫଳପ୍ରଦ କରିବା ଦିଗରେ ପଦ-କ୍ଷେପ ନିଆଯାଉଛି । ଆମର କାର୍ଯ୍ୟକାଳ ଭିତରେ ବ୍ୟକ୍ତିବିଶେଷ ଓ ବିଭିନ୍ନ ଅନୁ-ଷ୍ଠାନମାନଙ୍କ ପକ୍ଷରୁ ଯେଉଁ ଅକୁଣ୍ଠିତ ସାହାଯ୍ୟ ଓ ସହଯୋଗ ଲଭ କରୁଛୁ ସେଥିପାଇଁ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଗଭୀର କୃତଜ୍ଞତା ଓ ଧନ୍ୟବାଦ ଅର୍ପଣ କରୁଛୁ ।

# ଉତ୍କଳ ସାହିତ୍ୟ ସମାଜ, ଶ୍ରୀରାମଚନ୍ଦ୍ର ଭବନ, କଟକ

## ୧୯୮୫-୮୬ ଓ ୧୯୮୬-୮୭ ଆର୍ଥିକ ବର୍ଷ (୨ ବର୍ଷ)ର ଆୟବ୍ୟୟ ବିବରଣୀ

### ଆୟ

| | ୧୯୮୫-୮୬ | ୧୯୮୬-୮୭ | ମୋଟ |
|---|---|---|---|
| ହାତରେ ଥିଲା— | | | |
| (କ) ଟଙ୍କା ଆକାରରେ | ୧୬୦.୮୨ | ୩,୨୦.୬୮ | ୧୬୦.୮୨ |
| (ଖ) କଟକ କେନ୍ଦ୍ର ସମବାୟ ବ୍ୟାଙ୍କ କରେଣ୍ଟ ଆକାଉଣ୍ଟ | ୧,୯୨୯.୯୪ | ୧,୯୩୯.୪୦ | ୧,୯୨୯.୯୪ |
| (ଗ) ଏୟ୍ନ ସେଭିଙ୍ଗସ୍ ବ୍ୟାଙ୍କ ଆକାଉଣ୍ଟ | ୨୭,୨୯୬.୭୪ | ୧୯,୫୧୭.୩୧ | ୨୭,୨୯୬.୭୪ |
| (ଘ) ଏୟ୍ନ ଫିକ୍ସ୍ଡ଼ ଡିପୋଜିଟ୍ | ୧୭,୬୨୦.୦୦ | ୧୭,୬୨୦.୦୦ | ୧୭,୬୨୦.୦୦ |
| (ଙ) ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ କଟକର ଫିକ୍ସଡ଼ଡିପୋଜିଟ | ୩,୦୦୦.୦୦ | ୩,୦୦୦.୦୦ | ୩,୦୦୦.୦୦ |
| | ୫୦,୦୦୭.୫୦ | ୪୨,୩୯୭.୩୯ | ୫୦,୦୦୭.୫୦ |

## ରେଭନ୍ୟୁ ଆୟ

| | | | |
|---|---|---|---|
| ୧ । ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗରୁ ଗ୍ରାଣ୍ଟ୍ | ୨,୫୦୦.୦୦ | ୨,୫୦୦.୦୦ | ୫,୦୦୦.୦୦ |
| ୨ । ଘରଭଡ଼ା | ୩,୯୭୦.୦୦ | ୨,୪୪୦.୦୦ | ୬,୪୧୦.୦୦ |
| ୩ । ଅନୁଦାନ | ୫୦୭.୦୦ | ୯୦୦.୦୦ | ୧,୪୦୭.୦୦ |
| ୪ । ସଭ୍ୟଚାନ୍ଦା ଆଦାୟ— ଆଜୀବନ ସଭ୍ୟ | ୩,୮୬୬.୦୦ | ୩,୩୬୬.୦୦ | ୭,୨୩୨.୦୦ |
| ବାର୍ଷିକ ସଭ୍ୟ | ୬୫୮.୦୦ | ୧୯୨.୦୦ | ୮୫୦.୦୦ |
| ୫ । ହଲ୍ ଭଡ଼ା | ୪,୯୭୦.୦୦ | ୫,୩୮୦.୦୦ | ୧୦,୩୫୦.୦୦ |
| ୬ । ବ୍ୟାଙ୍କ ସୁଧ— ସେଭିଙ୍ଗ୍ସ୍ ବ୍ୟାଙ୍କ ଜମାରୁ | ୧,୨୭୯.୪୫ | ୧,୩୩୯.୮୪ | ୨,୬୧୯.୨୯ |
| ଫିକ୍ସ୍‌ଡ୍ ଡିପୋଜିଟ ଜମାରୁ | ୧,୬୪୪.୧୨ | ୧,୪୩୧.୨୪ | ୩,୦୭୫.୩୬ |
| କରେଣ୍ଟ୍ ଆକାଉଣ୍ଟ ଜମାରୁ | ୯.୪୬ | .. | ୯.୪୬ |
| ୭ । ବୈକୁଣ୍ଠନାଥ ଗ୍ରନ୍ଥାବଳୀ ବିକ୍ରୟ | ୧୩୧.୦୦ | .. | ୧୩୧.୦୦ |
| ୮ । ଅନ୍ୟାନ୍ୟ ବହି ବିକ୍ରୟ | ୯.୫୦ | ୬.୦୦ | ୧୫.୫୦ |
| ୯ । ଅନ୍ୟାନ୍ୟ (ପୁରୁଣା ପତ୍ରପତ୍ରିକା ପଡ଼ିବାରୁ) | ୧୦.୦୦ | ୧୦.୦୦ | ୨୦.୦୦ |
| | ୧୯,୫୫୪.୫୩ | ୧୭,୫୬୫.୦୮ | ୩୭,୧୧୯.୬୧ |

| | | | |
|---|---|---|---|
| **ବିଶେଷ ଅନୁଦାନ** | | | |
| ୧ । ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ ପ୍ରକାଶନ ନିମନ୍ତେ ରାଜ୍ୟ ସରକାରଙ୍କଠାରୁ ଅନୁଦାନ ସ୍ୱରୂପ | | ୫,୦୦୦.୦୦ | ୫,୦୦୦.୦୦ |
| ୨ । ଉନ୍ନୟନ ପାର୍ଣ୍ଣିକୁ ଦାନ | | ୧,୦୦୦.୦୦ | ୧,୦୦୦.୦୦ |
| ୩ । ପରଶୁରାମ କ୍ଷୁଦ୍ରଗଳ୍ପ ପ୍ରତିଯୋଗିତା ପୁରସ୍କାର ପ୍ରଚଳନ ପାଇଁ | | ୫,୦୦୦.୦୦ | ୫,୦୦୦.୦୦ |
| **ଅନ୍ୟାନ୍ୟ ଆୟ** | | | |
| ୧ । ଅଗ୍ରୀମ ଫେରି ପାଇବା | *୩୬୪.୦୦ | **୪,୮୫୩.୪୭ | ୫,୨୧୭.୪୭ |
| | ୩୬୪.୦୦ | ୧୫,୮୫୩.୪୭ | ୧୬,୨୧୭.୪୭ |
| | ୬୯,୯୨୬.୦୩ | ୨୫,୮୧୫.୯୪ | ୧,୦୩,୩୪୪.୫୮ |

## ବ୍ୟୟ

| | ୧୯୮୫-୮୬ | ୧୯୮୬-୮୭ | ମୋଟ |
|---|---|---|---|
| **୮ । ରେଭିନ୍ୟୁ ପେମେଣ୍ଟ** | | | |
| ୧ । କର୍ମଚାରୀ ବେତନ | ୬୪୨୦.୦୦ | ୮୦୬୦.୦୦ | ୧୪୪୮୦.୦୦ |
| ୨ । ମଜୁରୀ | ୭୭.୦୦ | ୪୮.୦୦ | ୧୨୫.୦୦ |
| ୩ । ସଭା ସମିତି, ଉତ୍ସବ | ୩,୫୦୪.୮୦ | ୧,୦୭୭.୮୮ | ୪,୫୮୩.୬୮ |
| ୪ । ଯାତାୟାତ | ୪୫.୦୦ | ୪୯.୦୦ | ୯୪.୦୦ |
| ୫ । ମରାମତି | ୮୬୬.୮୯ | .. | ୮୬୬.୮୯ |
| ୬ । 'ପ୍ରତିଭା ପଞ୍ଚକ' ପୁସ୍ତକ ଛାପା ଖର୍ଚ୍ଚ | .. | ୧,୮୭୮.୫୦ | ୧,୮୭୮.୫୦ |
| ୭ । ପୁସ୍ତକ ବନ୍ଧାଇ | ୨୮୧.୦୦ | ୨୯୬.୦୦ | ୫୭୭.୦୦ |
| ୮ । ପ୍ରିଣ୍ଟିଂ ଆଣ୍ଡ ଷ୍ଟେସନାରୀ | ୯୦୮.୪୫ | ୫୩୩.୪୯ | ୧,୪୪୧.୯୪ |
| ୯ । ପୁରସ୍କାର | ୧,୭୫୦.୦୦ | .. | ୧,୭୫୦.୦୦ |
| ୧୦ । ପାଣିଟ୍ୟାକ୍ସ | ୭୨.୦୦ | ୭୨.୦୦ | ୧୪୪.୦୦ |
| ୧୧ । ଇଲେକ୍‌ଟ୍ରିକ୍ ବିଲ | ୫୪୦.୦୦ | ୧,୪୯୫.୦୦ | ୨,୦୩୫.୦୦ |
| ୧୨ । ଡାକ ଖର୍ଚ୍ଚ | ୧୬୬.୭୫ | ୮୬.୫୦ | ୨୫୩.୨୫ |
| ୧୩ । ଇଲେକ୍‌ଟ୍ରିକ ଉପକରଣ କ୍ରୟ | ୩୦୦.୩୫ | ୨୫୧.୬୫ | ୫୫୨.୦୦ |
| ୧୪ । ଅନ୍ୟାନ୍ୟ (କଣ୍ଟିଜେନ୍‌ସିଜ୍) | ୭୧.୦୫ | ୭୪.୧୧ | ୧୪୫.୧୬ |

| | | | |
|---|---|---|---|
| ୧୫ । ମ୍ୟୁନିସିପାଲିଟି ଟ୍ୟାକସ | ୫୨.୦୦ | ୫୨.୦୦ | ୧୦୪.୦୦ |
| ୧୬ । ପୋଷାକ ଭତ୍ତା | | ୧୨୦.୦୦ | ୧୨୦.୦୦ |
| | ୧୫,୦୫୬.୨୯ | ୧୪,୦୯୪.୧୩ | ୨୯,୧୫୦.୪୨ |

## ନନ୍‌ରେଭିନ୍ୟୁ ପେମେଣ୍ଟସ୍

| | | | |
|---|---|---|---|
| ୧ । ଆଲମିରା କ୍ରୟ | | ୯୭୩.୨୨ | ୯୭୩.୨୨ |
| ୨ । ପାଠାଗାର ସିଡ଼ିଘର ତିଆରି | ୩,୯୯୩.୩୫ | ୩,୭୨୩.୪୭ | ୭,୭୧୬.୮୨ |
| ୩ । ଅଗ୍ରୀମ ଦିଆଯାଇଛି | ❋❋❋ ୮,୧୧୫.୦୦ | ‡‡‡ ୧,୧୦୦.୦୦ | ୯,୨୧୫.୦୦ |
| ୪ । ପେଟ୍ରୋମାକ୍ସ ଲାଇଟ୍ କ୍ରୟ | ୩୬୪.୦୦ | | ୩୬୪.୦୦ |
| ୫ । ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗକୁ ରିଭ୍ୟାଲିଡେସନ୍ ଓ କରେକ୍‌ସନ୍ ପାଇଁ ଡ୍ରାଫ୍‌ଟ ପଠାଯିବା | | ୫,୦୦୦.୦୦ | ୫,୦୦୦.୦୦ |
| | ୧୨,୪୭୨.୩୫ | ୧୦,୭୯୬.୬୯ | ୨,୩୨୬୯.୦୪ |
| | ୨୭,୫୨,୮.୬୪ | ୨୪,୮୯, .୮୨ | ୫୨,୪୦,୯.୪୬ |

## ହାତରେ ରହିଲା

| | | | | |
|---|---|---|---|---|
| (କ) | ଟଙ୍କା ଆକାରରେ | ୩୨୦.୬୦ | ୨,୦୯୩.୩୩ | ୨,୦୯୩.୩୩ |
| (ଖ) | କଟକ କେନ୍ଦ୍ର ସମବାୟ ବ୍ୟାଙ୍କ, କରେଣ୍ଟ ଆକାଉଣ୍ଟ | ୧,୯୩୯.୪୮ | ୨,୧୫୬.୫୦ | ୨,୧୫୬.୫୦ |
| (ଗ) | ଏୟ୍ନ ସେଭିଙ୍ଗସ୍ ବ୍ୟାଙ୍କ ଆକାଉଣ୍ଟ | ୧୯,୫୧୭.୩୧ | ୨୬,୦୫୫.୬୯ | ୨୬,୦୫୫.୬୯ |
| (ଘ) | ଏୟ୍ନ ଫିକ୍ସଡ ଡିପୋଜିଟ ଆକାଉଣ୍ଟ | ୧୭,୬୨୦.୦୦ | ୧୭୬୨୦.୦୦ | ୧୭,୬୨୦.୦୦ |
| (ଙ) | ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ କଟକରେ ଫିକ୍ସ ଡଡିପୋଜିଟ | ୩,୦୦୦.୦୦ | ୩,୦୦୦.୦୦ | ୩,୦୦୦.୦୦ |
| | | ୪୨,୩୯୭.୩୯ | ୫୦,୯୨୫.୫୨ | ୫୦,୯୨୫.୫୨ |
| | | ୬୯,୯୨୬.୦୩ | ୭୫,୮୧୫.୯୪ | ୧,୦୩,୩୪୪.୫୮ |

| | | |
|---|---|---|
| * ଶ୍ରୀ ସଂଗ୍ରାମ କେଶରୀ ମହାପାତ୍ରଙ୍କଠାରୁ ପେଟ୍ରୋମାକ୍ସ ଲଇଟ୍ କ୍ରୟ ବାବଦକୁ | ଟ | ୩୬୪.୦୦ |
| ** (କ) ବିକାଶ ପ୍ରିଣ୍ଟର୍ସଠାରୁ 'ପ୍ରତିଭ ପଞ୍ଚକ' ପୁସ୍ତକ ଛାପିବା ବାବଦକୁ | ଟ | ୫୦୦.୦୦ |
| (ଖ) ଆଲମିରା ତିଆରି ସକାଶେ ଦିଆଯାଇଥିବା ଅଗ୍ରୀମ | ଟ | ୪୦୦.୦୦ |
| (ଗ) ବହି ବନ୍ଧାଇ ସକାଶେ ଶ୍ରୀ ନବୀନକୁମାର ସିଂହ ନେଇଥିବା ଅଗ୍ରୀମ ଆଦାୟ | ଟ | ୧୩୦.୦୦ |
| (ଘ) କର୍ମଚାରୀ ଶ୍ରୀ ଦିଜ ଦାସ ପୂଜା ଖର୍ଚ୍ଚ ପାଇଁ ନେଇଥିବା ଅଗ୍ରୀମ ଆଦାୟ | ଟ | ୧୦୦.୦୦ |
| (ଙ) ପାଠାଗାର ସିଡ଼ିଘର ସକାଶେ ଜିନିଷପତ୍ର କିଣିବା ନିମନ୍ତେ ଅନୁଷ୍ଠାନର କୋଷାଧ୍ୟକ୍ଷ ଶ୍ରୀ ସଂଗ୍ରାମକେଶରୀ ମହାପାତ୍ର ନେଇଥିବା ଅଗ୍ରୀମରୁ କାଠ ଓ ଇଟା ଖର୍ଚ୍ଚର ବାବଦରୁ | ଟ | ୩,୭୨୩.୪୭ |
| ମୋଟ | ଟ | ୪,୮୫୩.୪୭ |

| | | |
|---|---|---|
| *** (କ) ଆଲମିରା ତିଆରି କରିବା ସକାଶେ କାରିଗରକୁ ଅଗ୍ରୀମ ଦିଆଯିବା | ଟ | ୪୦୦.୦୦ |
| (ଖ) ବହି ବନ୍ଧାଇ ସକାଶେ ଶ୍ରୀ ନବୀନକୁମାର ସିଂହଙ୍କୁ ଅଗ୍ରୀମ ଦେବା | ଟ | ୧୩୦.୦୦ |
| (ଗ) ପାଠାଗାର ସିଡ଼ିଘର ତିଆରି ସକାଶେ ଅନୁଷ୍ଠାନର କୋଷାଧ୍ୟକ୍ଷ ଶ୍ରୀ ସଂଗ୍ରାମକେଶରୀ ମହାପାତ୍ରଙ୍କୁ ଜିନିଷପତ୍ର କିଣିବା ପାଇଁ ଅଗ୍ରୀମ ଦେବା | ଟ | ୭,୫୮୫.୦୦ |
| ମୋଟ | ଟ | ୮,୧୧୫.୦୦ |

| | | |
|---|---|---|
| ‡‡‡ (କ) 'ପ୍ରତିଭ ପଞ୍ଚକ' ପୁସ୍ତକ ଛାପିବା ପାଇଁ ବିକାଶ ପ୍ରିଣ୍ଟର୍ସକୁ ଅଗ୍ରୀମ ଦେବା | ଟ | ୫୦୦.୦୦ |
| (ଖ) କର୍ମଚାରୀ ଶ୍ରୀ ଦିଜ ଦାସ ପୂଜା ଖର୍ଚ୍ଚ ପାଇଁ ଅଗ୍ରୀମ ନେବା | ଟ | ୧୦୦.୦୦ |
| (ଗ) କର୍ମଚାରୀ ଶ୍ରୀ ଦିଜ ଦାସ ଝିଅ ବିଭାଘର ସକାଶେ ବେତନ ବାବଦକୁ ଅଗ୍ରୀମ ନେବା | ଟ | ୫୦୦.୦୦ |
| ମୋଟ | ଟ | ୧,୧୦୦.୦୦ |

ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗ ଉତ୍କଳ ସାହିତ୍ୟ ସମାଜର ୧୯୮୫-୮୬ ଆର୍ଥିକ ବର୍ଷର ଆୟ–ବ୍ୟୟ ବିବରଣୀ ଅଡିଟ୍ କରିଥିବାରୁ ଓ ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟ ଚାର୍ଟାର୍ଡ଼ ଆକାଉଣ୍ଟାଣ୍ଟ ଶ୍ରୀ ହୃଦୟାନନ୍ଦ ନାୟକ ଏଚ. ନାୟକ ଆଣ୍ଡ କୋ: ତରଫରୁ ବହୁ କଷ୍ଟ ସ୍ୱୀକାର କରି ୧୯୮୫-୮୬ ଓ ୧୯୮୬-୮୭ ଆର୍ଥିକ ବର୍ଷ (୨ ବର୍ଷ) ର ଆୟବ୍ୟୟ ବିବରଣୀ ଅଡିଟ୍ କରିଥିବାରୁ ଆମେ ତାଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁ । ଆମର କାର୍ଯ୍ୟକାଳ ମଧ୍ୟରେ ସାହିତ୍ୟ ସମାଜର ସଭାପତି, ଉପସଭାପତି, କୋଷାଧ୍ୟକ୍ଷ ଓ କାର୍ଯ୍ୟକାରୀ ସମିତିର ବରେଣ୍ୟ ସଭ୍ୟମାନେ ସମସ୍ତ କାର୍ଯ୍ୟରେ ପୂର୍ଣ୍ଣପ୍ରାଣରେ ସାହାଯ୍ୟ ଓ ସହଯୋଗ କରିଥିବାରୁ ଆମ୍ଭେମାନେ ସେମାନଙ୍କ ନିକଟରେ ବିଶେଷ ଭାବେ କୃତଜ୍ଞ ।

ମହୋତ୍ତମାନାଂ ସହଯୋଗ-ସମ୍ପଦା
ସଦା ଚକାସ୍ତୀହ ସୁଭବ-ଭୂଷଣଂ ।
ମନୋରମା ଭବ୍ୟ-ବିଗ୍ରହ-ସାରଦା
ସୁଭାରତୀ ସର୍ବଶିବଂ ତନୋତୁ ନଃ ।

ଅର୍ଥାତ୍ ମହୋତ୍ତମ ଜନମାନଙ୍କର ସହଯୋଗ ରୂପକ ସମ୍ପଦରେ ଏହି ସୁଭବ-ଚରିତ୍ରସମ୍ପନ୍ନ ସଂଗଠନ ସର୍ବଦା ଦୀପ୍ତିମାନ ହେଉଛି । ଭବ୍ୟ-ବିଗ୍ରହ ଓ ମନର ଆହ୍ଲାଦପ୍ରଦାୟିନୀ ଭାରତୀ ଆମ୍ଭ ସମସ୍ତଙ୍କର ସର୍ବକଲ୍ୟାଣକର ହେଉ ।

**ଶଙ୍କର୍ଷଣ ମଙ୍ଗରାଜ**
ସଂଗଠନ ସମ୍ପାଦକ

**ମନୋରମା ମହାପାତ୍ର**
ସାଧାରଣ ସମ୍ପାଦିକା

ତା ୨୦ । ୬ । ୮୭

# ଉତ୍କଳ ସାହିତ୍ୟ ସମାଜ
## କାର୍ଯ୍ୟ ନିର୍ବାହିକା ସମିତି

**ସଭାପତି :**

ଶ୍ରୀ ବିଚିତ୍ରାନନ୍ଦ କର

**ଉପସଭାପତି :**

ଶ୍ରୀ ଶୁକଦେବ ସାହୁ

**ସାଧାରଣ ସଂପାଦକ :**

ଶ୍ରୀମତୀ ମନୋରମା ମହାପାତ୍ର

**ସଙ୍ଗଠନ ସଂପାଦକ :**

ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ

**ପାଠାଗାର ସଂପାଦକ :**

ଶ୍ରୀ ସତ୍ୟପ୍ରିୟ ମହାପାତ୍ର

**କୋଷାଧ୍ୟକ୍ଷ :**

ଶ୍ରୀ ସଂଗ୍ରାମକେଶରୀ ମହାପାତ୍ର

**ସଭ୍ୟବର୍ଗ :**

ଶ୍ରୀ ପଠାଣି ପଟ୍ଟନାୟକ
ଶ୍ରୀ ବୈଷ୍ଣବ ଚରଣ ସାମଲ
ଶ୍ରୀ ମନୋରଞ୍ଜନ ଦାସ
ଶ୍ରୀ ରବିନାରାୟଣ ମହାପାତ୍ର
ଡକ୍ଟର ରତ୍ନାକର ଚଇନି
ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର
ଶ୍ରୀ ମୁରାରିମୋହନ ଜେନା
ଶ୍ରୀ ପରମାନନ୍ଦ ଅଧିକାରୀ
ଶ୍ରୀ ଯଜ୍ଞେଶ୍ୱର ତ୍ରିପାଠୀ
ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ
ଶ୍ରୀ ଅଚ୍ୟୁତାନନ୍ଦ କର

**ନିମନ୍ତ୍ରିତ ସଭ୍ୟ :**

ଶ୍ରୀ ରାଧାମୋହନ ଗଡ଼ନାୟକ

# ଉତ୍କଳ ସାହିତ୍ୟ ସମାଜ-ପ୍ରକାଶନ

| | | |
|---|---|---|
| ୧ । | ବୈକୁଣ୍ଠନାଥ ଗ୍ରନ୍ଥାବଳୀ (୧ମ ଭାଗ) | ଟ ୨୧-୦୦ |
| ୨ । | ବୈକୁଣ୍ଠନାଥ ଗ୍ରନ୍ଥାବଳୀ (୨ୟ ଭାଗ) | ଟ ୨୧-୦୦ |
| ୩ । | ଜବାହରଲାଲ ନେହେରୁ ସ୍ମରଣିକା | ଟ ୫-୦୦ |
| ୪ । | ଭକ୍ତମାଳା | ଟ ୨-୦୦ |
| ୫ । | ହେ ଦୀନବନ୍ଧୁ ! ହେ ଗୋପବନ୍ଧୁ ! | ଟ ୫-୦୦ |
| ୬ । | ସାହିତ୍ୟିକ ଅଭିଭାଷଣ | ଟ ୧୦-୦୦ |
| ୭ । | ହୀରକଜୟନ୍ତୀ ସ୍ମରଣିକା | ଟ ୫-୦୦ |
| ୮ । | ବ୍ରଜସୁନ୍ଦର ସ୍ମରଣିକା | ଟ ୩-୦୦ |
| ୯ । | ଲେଖକ ସମ୍ମେଳନ ବ୍ରହ୍ମପୁର ସ୍ମରଣିକା | ଟ ୧-୦୦ |
| ୧୦ । | ଉତ୍କଳ ସାହିତ୍ୟ ସମାଜ ଇତିବୃତ୍ତି | ଟ ୧-୨୦ |
| ୧୧ । | ସଭା ଓ ସାହିତ୍ୟ | ଟ ୧-୦୦ |
| ୧୨ । | ସ୍ୱର୍ଣ୍ଣସେତୁ | ଟ ୨-୦୦ |
| ୧୩ । | Preservation of Old News Papers | Re. 1-00 |
| ୧୪ । | ନାଟ୍ୟକାର ଜଗନ୍ମୋହନ ଲାଲା | ଟ ୪-୦୦ |



ସତ୍ୟବାଦୀ ପ୍ରେସ୍, କଟକ-୧